# ଶିଳ୍ପ ବନାମ ବିକାଶ

## ହୀରାକୁଦ ଜଳଭଣ୍ଡାର:କୃଷକ ବନାମ ଶିଳ୍ପପତି



ପ୍ରସ୍ତୁତି: ଅନ୍ୱେଷା    ସଂପାଦନା: ସରୋଜ    ମୂଲ୍ୟ-ଟ୧୨/-

ବୃହତ ଶିଳ୍ପ ଓ ନଦୀ ବନ୍ଧର ନାରକୀୟତା ବିରୋଧରେ ତଥା ବିସ୍ଥାପିତଙ୍କୁ ନ୍ୟାୟ ଦାବିରେ ଆଜୀବନ ସଂଗ୍ରାମ କରିଥିବା ପ୍ରସନ୍ନ ପଣ୍ଡା ଏବଂ ବିକଳ୍ପ ବିକାଶ ପାଇଁ ବିଚାର ନିର୍ମାଣ ଓ ସଂଘର୍ଷର କାମକୁ ଅସଂପୂର୍ଣ୍ଣ ଅବସ୍ଥାରେ ଛାଡିଦେଇ ଅବେଳରେ ଆମ ଗହଣରୁ ଚାଲିଯାଇଥିବା କିଶନ ପଟ୍ଟନାୟକଙ୍କ ସ୍ମୃତିରେ ଅନ୍ୱେଷା ତରଫରୁ ଅବିଚାରିତ ଶିଳ୍ପାୟନ ବିରୋଧରେ ଲଢୁଥିବା ଆନ୍ଦୋଳନକାରୀଙ୍କୁ ନିବେଦିତ ।

## ଶିଳ୍ପ ବନାମ ବିକାଶ

## ହୀରାକୁଦ ନଦୀବନ୍ଧ: କୃଷକ ବନାମ ଶିଳ୍ପପତି

## ସୂଚୀପତ୍ର




ଯୋଗାଯୋଗ :- ଗୋଲକ ବିହାରୀ ନାଥ, ଅନ୍ୱେଷା, ଶ୍ରୀରାମ ଲେନ, ଗୋପାଳ ମାଲ, ବୁଢ଼ାରଜା, ସମ୍ବଲପୁର - ୪ ଫୋନ.ନଂ- ୨୪୦୨୬୩୪ (୦୬୬୩) ।

ସମତା ଭବନ, ବରଗଡ । ରାଜୀବ ବୁକ୍ଷ୍ଟଲ, ସମ୍ବଲପୁର ବସ୍ଷ୍ଟାଣ୍ଡ ।

ଡି.ଟି.ପି. କରୁଣା

ଇଲେକ୍ଟ୍ରୋ କମ୍ପ୍ଲେକ୍ସ, ସମ୍ବଲପୁର, ଫୋନ.ନଂ- ୦୬୬୩-୨୪୦୫୦୨୬ ।

# ଶିଳ୍ପାୟନ ବନାମ ବିକାଶ

*ଏକ ଅଣପୁଂଜିବାଦୀ ବା ପ୍ରାକ୍ ପୁଂଜିବାଦୀ ଅଂଚଳ ଓ ସାମାଜିକ ଗୋଷ୍ଠି ବାହ୍ୟବଜାର ରୂପରେ ରହିଲେ ଯାଇ ପୁଂଜିବାଦର ସମୃଦ୍ଧି ସମ୍ଭବ । (ରୋଜା ଲକଜମ୍‌ବର୍ଗ)*

*ମୋତେ ଲୋଡା ନାହିଁ ଜହ୍ନ କି ଜଗତ / ମୁଁ ତ ମାଟିର ପୋକ, ମାଟି ଖାଇ ମାଟିରେ କରିଛି ଘର / ଯାଅ ଯାଅ ମାଆକୁ ନେଇ କରିବାକୁ ଦେବିନି ବେପାର । (ସରୋଜ)*

ଶିଳ୍ପାୟନ ସମ୍ବନ୍ଧରେ ଆଲୋଚନା ଆରମ୍ଭ ପୂର୍ବରୁ ଶିଳ୍ପାୟନକୁ ନେଇ ଆମ ଚେତନା ଅବଚେତନରେ ରଚିଥିବା କେତେକ ମିଥ୍ (ଭ୍ରମ) ସଂପର୍କରେ ପ୍ରଥମେ ଆଲୋଚନା କରିବା ଜରୁରୀ ।

୧. ଦ୍ରୁତ ଶିଳ୍ପାୟନ ଆଣିଦିଏ ସମୃଦ୍ଧି । ଦ୍ରୁତ ଶିଳ୍ପାୟନ ଯୋଗୁଁ ଆମେରିକା, ବ୍ରିଟେନ ବା ୟୁରୋପୀୟ ଦେଶ ଗୁଡ଼ିକ ସମୃଦ୍ଧ । ୨. ଖଣିଜ ସମ୍ପଦର ପ୍ରାଚୁର୍ଯ୍ୟ ଥିଲେ ସେ ଦେଶ ସମୃଦ୍ଧ ହେବାର ସମ୍ଭାବନା ବେଶି ।

**ପ୍ରଥମ ମିଥ୍ ସମ୍ପର୍କରେ:** ଆମେ ସଭିଏଁ ଜାଣୁ ଯେ ଜେମସ୍ ମିଲଙ୍କ ବାଷ୍ପିୟ ଚାଳିତ ଇଞ୍ଜିନ ଭଳି କେତେକ ଆବିଷ୍କାର ଓ ଉଦ୍ଭାବନ ଥିଲା ଆଧୁନିକ ଶିଳ୍ପର ଆରମ୍ଭ । ଶିଳ୍ପାୟନ କି ରକମର ଦୁର୍ଭାଗ୍ୟ ଆଣିଥିଲା ତାର ମାର୍ମିକ ଅବତାରଣା ରହିଛି ମାର୍କସଙ୍କ 'କେପିଟାଲ' ପୁସ୍ତକରେ । ସେ ପୁସ୍ତକରେ ରହିଛି ଶ୍ରମିକ ଶୋଷଣର ଅନେକ ଉଦାହରଣ । ଠିକ୍ ସେମିତି ଚାର୍ଲସ ଡିକେନ୍‌ସ୍‌ଙ୍କ ଉପନ୍ୟାସ 'ଲେଡ଼ି ଚାର୍ଟର୍ଲିସ ଲଭର' ବହିରେ ଶ୍ରମିକ ଶୋଷଣର କରୁଣ ଚିତ୍ର ବେଶ୍ ଲୋମ ହର୍ଷଣକାରୀ । ମାର୍କସ ଅବଶ୍ୟ ନିଜ ଲେଖାରେ ଆଫ୍ରିକା ଓ ଲାଟିନ୍ ଆମେରିକାର ଖଣିଜ ଦ୍ରବ୍ୟର ଲୁଟ ପାଇଁ ପାଶ୍ଚତ୍ୟ ଶାସକ ଶ୍ରେଣୀ ସେଠିକାର ମୂଳ ନିବାସୀଙ୍କ ଉପରେ କରିଥିବା ଶୋଷଣ ଓ ଶ୍ରମିକ ଅତ୍ୟାଚାର ବାବଦରେ କିଛି ଉଲ୍ଲେଖ କରି ନ ଥିଲେ । ସେ କଣ ଏସବୁର ଖବର ରଖି ନ ଥିଲେ ? ସେ କଣ ମୂଳ ନିବାସୀଙ୍କ ପ୍ରତି ଉଦାସୀନ ଥିଲେ ? ଏ ସବୁ ଏକ ବିତର୍କିତ ବିଷୟ । ଶ୍ରମିକ ଅତ୍ୟାଚାର ଓ ଶୋଷଣର ଭିତ୍ତି ଉପରେ ଛିଡ଼ା ହୋଇଥିବା, ପାଶ୍ଚାତ୍ୟର ସମୃଦ୍ଧିରେ ଶିଳ୍ପାୟନର ଭୂମିକା ମୋଟେ ନ ଥିଲା ସେମିତି ନୁହେଁ କିନ୍ତୁ ସେମାନଙ୍କର ସମୃଦ୍ଧିର ଅସଲ କାରଣ ଥିଲା ଉପନିବେଶିକ ଶୋଷଣ, ଶସ୍ତା କଞ୍ଚାମାଲ ଓ ଶ୍ରମର ଦୋହନ, ତା ସାଙ୍ଗକୁ ତୃତୀୟ ବିଶ୍ୱରେ ଥିବା ପାରମ୍ପାରିକ ଉତ୍ପାଦନ ତଥା ବଜାର ବ୍ୟବସ୍ଥା ଉପରେ କବ୍‌ଜା । ସମୟ ଥିଲା, ବ୍ରିଟେନ ସାମ୍ରାଜ୍ୟର ସୂର୍ଯ୍ୟାସ୍ତ ହେଉ ନ ଥିଲା । ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ବହୁ ଦେଶକୁ ପଦାନତ କରି ବ୍ରିଟେନ, ଫ୍ରାନ୍ସ, ଡ଼ଚ୍ ଓ ଓଲନ୍ଦାଜ୍‌ମାନେ ଦଶନ୍ଧି ଦଶନ୍ଧି ଧରି

ଶୋଷଣ କରି ପ୍ରାରମ୍ଭିକ ପୁଞ୍ଜି ଯୋଗାଡ଼ କରିଥିବା କଥା ଆମେ ଭୁଲିଯିବା ଉଚିତ ହେବ ନାହିଁ । ଠିକ୍ ସେମିତି ଆମେରିକାର ସମୃଦ୍ଧି ପଛରେ ଆଫ୍ରିକାର ଶୋଷଣ ଓ କଳା ଲୋକଙ୍କ ଶ୍ରମ ଲୁଣ୍ଠନର ନାରକୀୟ ଇତିହାସ ରହିଛି । ଯାହା କଲମ୍ବସଙ୍କ ଆବିଷ୍କାରର ଦିନଠୁ ଆରମ୍ଭ ହୋଇ ଶତାବ୍ଦୀ ଶତାବ୍ଦୀ ଧରି ଚାଲିଛି । ଆଜିବି ଇରାକ୍ ରେ ଦେଶପ୍ରେମ ନାଁରେ ଜୀବନ ଦେଉଥିବା ଆମେରିକୀୟ ସୈନ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ହେଲେ କଳା । ଭାରତ ଉପରେ ବ୍ରିଟେନର ସାମ୍ରାଜ୍ୟବାଦୀ ଶୋଷଣର ସବୁଠୁ ପ୍ରକୃଷ୍ଟ ଉଦାହରଣ ହେଉଛି -ଭାରତୀୟ ଲୁଗା ଶିଳ୍ପର ମୃତ୍ୟୁ ପାଇଁ ଭାରତୀୟ ବୁଣାକାରଙ୍କ ଅଙ୍ଗୁଠି କାଟିବା । ମାଞ୍ଚେଷ୍ଟରର ଲୁଗା ବିକ୍ରି ପାଇଁ ଭାରତର ପାରମ୍ପାରିକ ଲୁଗା ଶିଳ୍ପକୁ ମରିବାକୁ ପଡ଼ିଥିଲା । ବ୍ରିଟିଶ କଂପାନୀ ଯେତେବେଳେ ଭାରତକୁ ଆସିଲା, ସମଗ୍ର ୟୁରୋପର ବହିଃବାଣିଜ୍ୟ ସହ ଭାରତର ବାଣିଜ୍ୟ ପ୍ରାୟ ସମାନ ଥିଲା । ଏହା ଥିଲା ଶତକଡା ୨୨ ରୁ କିଛି ଅଧିକ । ବ୍ରିଟେନରେ ୧୭୦୧ ଏବଂ ୧୭୦୨ ବେଳକୁ ଭାରତୀୟ ଓ ଚୀନି ବସ୍ତ୍ରର ଆମଦାନୀ ଓ କିଣାବିକା ଉପରେ କଡା ପ୍ରତିବନ୍ଧକ ଲଗାଯାଇଥିଲା । ଯଦ୍ୱାରା ୟୁରୋପୀୟ କପଡା ଉଦ୍ୟୋଗର ବିକାଶ ସମ୍ଭବ ହୋଇଥିଲା । ଲକ୍ଷ ଲକ୍ଷ ବୁଣାକାରଙ୍କୁ ବେକାର ହେବାକୁ ପଡ଼ିଥିଲା । ଭାରତର କୃଷକ ଶ୍ରେଣୀ ସହିତ ବୁଣାକାର ମାନଙ୍କର ଥିବା ଦେଣ ନେଣର ବଜାର ବ୍ୟବସ୍ଥାକୁ ଧ୍ୱଂସକରି ଦିଆଗଲା । ଭାରତୀୟ କୃଷକ ମାନଙ୍କ ଶୋଷଣ ତଥା ଭାରତର ସୁନା,ରୂପା ଓ ଖଣିଜ ଦ୍ରବ୍ୟର ଅନ୍ଧାଧୁନ୍ଦ ଲୁଣ୍ଠନ । ଶହସ୍ର ବର୍ଷର ଶୋଷଣରୁ ଏ ସମୃଦ୍ଧି ସମ୍ଭବ ହୋଇଛି । ଅବଶ୍ୟ ଏ ସମୃଦ୍ଧି ପଛରେ ସାମ୍ରାଜ୍ୟବାଦୀଙ୍କ ଦ୍ୱାରା ପ୍ରସ୍ତୁତ ଟେକ୍‌ନୋଲୋଜିର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ସେ ବନ୍ଧୁକ ହେଉ କି ଲୁଗାକଳ । ସାମ୍ରାଜ୍ୟବାଦୀଙ୍କ ଦ୍ୱାରା ଉଦ୍‌ଭୂତ ପ୍ରଯୁକ୍ତି ତ ସେ ଦିନଠୁ ଶୋଷଣରେ ଲାଗିଛି । ଅସଲରେ ଶୋଷଣ ଲବ୍ଧ ପୁଞ୍ଜିରୁ ଏହାର ସୃଷ୍ଟି । ପ୍ରକୃତିର ଦୋହନ ଓ ଲୋକଙ୍କ ତୀବ୍ର ଶୋଷଣ ପାଇଁ ଏ ପ୍ରଯୁକ୍ତିର ଉଦ୍ଭବ । ଏହା ଆତ୍ମ ନିର୍ଭରଶୀଳ ସ୍ଥାନୀୟ ଅର୍ଥନୀତି ମାନଙ୍କୁ ଧ୍ୱଂସ କରି ଆସିଛି । ଇଂଲଣ୍ଡରେ ମଧ୍ୟ ଶ୍ରମିକ ଓ କୃଷକ ଶ୍ରେଣୀ, ଶିଳ୍ପାୟନ ଜନିତ ବିସ୍ଥାପନ ଓ ଶ୍ରମିକ ଶୋଷଣ ବିରୋଧରେ ବହୁ ବଡ ବଡ ଓ ଲମ୍ବା ଆନ୍ଦୋଳନ କରିଥିଲେ । ତାକୁ ଅତି ନିର୍ମମ ରୂପେ ଦମନ କରାଯାଇଥିଲା । ଲକ୍ଷାଧିକ ସଂଖ୍ୟାରେ ଲୋକ ସେଠି ବି ବିସ୍ଥାପନ ଓ ସ୍ଥାନାନ୍ତରଣ ଶିକାର ହେଉଥିଲେ । ଇଂଲଣ୍ଡର ଶିଳ୍ପ ପତି ଓ ସରକାର ଏ ଚାପକୁ ଏଡେଇ ଦେଇ ପାରିବାର ବଡ କାରଣ ଥିଲା ଉପନିବେଶ । ବହୁ ଶ୍ରମିକ ଅନ୍ୟ ଦେଶରେ ଯାଇ କାମ କରି ପାରିଲେ । ତା ଛଡା ଉପନିବେଶିକ ଶୋଷଣ ଲବ୍‌ଧ ଆୟରୁ ସେମାନେ କିଛି ନିଜ ଦେଶର ଶ୍ରମିକଙ୍କ ପିଛା ଖର୍ଚ୍ଚ କରି ପାରିଲେ । ପ୍ରାରମ୍ଭିକ କାଳରେ ନିର୍ମମ ଅତ୍ୟାଚାର ଓ ପରେ ପରେ ଉପନିବେଶିକ

ନିଯୁକ୍ତି ଓ ଶୋଷଣ ଥିଲା ତାଂକ ସଫଳ ଶିଳ୍ପ ବିକାଶର କାରଣ । ଏ ସମୃଦ୍ଧିର ଧାରା ଏକ ବିଷମ ପୃଥିବୀକୁ ଜନ୍ମ ଦେଇଛି । ବାକି ବିଶ୍ୱକୁ ଦରିଦ୍ର କରି ଆଙ୍ଗୁଠି ଗଣା କେତେକ ଦେଶ ଏହି ନାରକୀୟ ସମୃଦ୍ଧି ଲାଭ କରିଛନ୍ତି । ଏହା ନ୍ୟାୟ ଉପରେ ଆଧାରିତ ବିଶ୍ୱ ସମାଜ ନିର୍ମାଣର ରାସ୍ତାରେ ସେଇ ଦିନଠୁ ଗତିରୋଧକ ଭାବେ ଛିଡ଼ା ହୋଇଛି ।

ଦୁର୍ଭାଗ୍ୟବଶତଃ ଆମର ଶିକ୍ଷିତ ସମାଜ ଉପରୋକ୍ତ ଭ୍ରମଗୁଡ଼ିକ ଦ୍ୱାରା ଆକ୍ରାନ୍ତ । ତଳେଇ ଦେଖିଲେ ଆଧୁନିକ ଶିକ୍ଷା ବ୍ୟବସ୍ଥା କାରଣରୁ ଏହି ଚିନ୍ତାଧାରା ଏକ ଅନ୍ଧବିଶ୍ୱାସର ରୂପ ନେଇଛି । ପ୍ରାଥମିକ ଶିକ୍ଷାରୁ ଆରମ୍ଭ କରି ଉଚ୍ଚ ଶିକ୍ଷା ପର୍ଯ୍ୟନ୍ତ ସବୁ ପାଠ୍ୟ ଖସଡ଼ାରେ ଏହି ଭ୍ରମିତ ବିଚାରକୁ ଏକ ମାତ୍ର ସତ୍ୟ ଭାବରେ ପରସା ଯାଉଛି । ଏହାର ସୁଯୋଗ ନେଇ ବର୍ତ୍ତମାନର ଦେଶୀ ବିଦେଶୀ କମ୍ପାନୀମାନେ, ଶିଳ୍ପାୟନକୁ ଓ ସମୃଦ୍ଧିକୁ ନେଇ ଆମ ଭିତରେ ରହିଥିବା ଭ୍ରମକୁ ଆହୁରି ମଜବୁତ୍ କରୁଛନ୍ତି । ଉଦାହରଣ ସ୍ୱରୂପ ରାୟଗଡ଼ା ଜିଲ୍ଲାର କାଶୀପୁରଠାରେ ହେବାକୁ ଥିବା ଆଲୁମିନା ପକଳ୍ପ 'ଉତ୍କଳ ଆଲୁମିନା' ତରଫରୁ ଏକ ପ୍ରଚାରପତ୍ରରେ କୁହାଯାଇଛି - 'କାଶୀପୁରରେ ଉତ୍କଳ ଆଲୁମିନା ପ୍ରତିଷ୍ଠିତ ହେଲେ କାଶୀପୁର ଓ ତା ଆଖପାଖ ଅଂଚଳ ଆମେରିକା ଓ ବ୍ରିଟେନ ଭଳି ସମୃଦ୍ଧ ହୋଇଯିବ । ରାୟଗଡ଼ା ଜିଲ୍ଲାରେ ବିଭିନ୍ନ ସରକାରୀ ସଭା ସମିତି,ବୈଠକ କରି ଉଚ୍ଚ ପ୍ରଶାସନିକ ଅଧିକାରୀମାନେ ଭାଷଣ ଓ ଭିଡ଼ିଓ ଫିଲ୍ମ ମାଧ୍ୟମରେ ଏହି ଚିନ୍ତାଧାରାର ପ୍ରସାରରେ ଲାଗିଥିଲେ । ଅବଶ୍ୟ ଏହି ପ୍ରଚାର ପ୍ରସାରରେ ଥିବା ମିଛ ଦାବୀ ଗୁଡ଼ିକ ବିରୋଧରେ ସ୍ଥାନୀୟ ଆନ୍ଦୋଳନକାରୀମାନେ ଯେଉଁ ସବୁ ପ୍ରଶ୍ନ ଉଠେଇଲେ, ତାର ଉତ୍ତର ପ୍ରଶାସନ କି କଂପାନୀ କର୍ତ୍ତୃପକ୍ଷ ଦେଇ ପାରିଲେ ନାହିଁ । ସ୍ଥାନୀୟ ଲୋକେ ଇନ୍ଦ୍ରାବତୀ, ସୁନାବେଡ଼ା, ଦାମନ ଯୋଡ଼ିର ତିକ୍ତ ଅନୁଭୂତି କଥା ଆଲୋଚନାକୁ ଆଣିଲେ । ସେମାନେ ପ୍ରଶ୍ନକଲେ ସେସବୁ ଅଂଚଳ କାହିଁକି ଆମେରିକା ହୋଇ ପାରିଲେ ନାହିଁ । ଦାମନଯୋଡ଼ି ପ୍ରକଳ୍ପ ପୂର୍ବରୁ ସେ ଅଂଚଳରେ ଆଦିବାସୀଙ୍କ ସଂଖ୍ୟା ଶହେରେ ଷାଠିଏ ଥିବା ବେଳେ ବର୍ତ୍ତମାନ ତାଂକ ସଂଖ୍ୟା ମାତ୍ର ୧୨ ଶତକଡ଼ା । ଇନ୍ଦ୍ରାବତୀରେ ଜମି ହରାଇଥିବା ଲୋକେ ଆଜି ମୁଠାଏ ମାଟି, ମୁନ୍ଦେ ପାଣି ଲାଗି ହାଁ ହାଁ । ନଦୀଗଲା, ନଦୀର ମାଛ ବି ଗଲା ହାତରୁ । ଭୋଗୁଥିବା ଦୁଃଖର ଆକ୍ରୋଶରେ ସେମାନେ କହନ୍ତି:- 'ଆମ ଦୁଃଖ ବୁଝ ନ ହେଲେ ଡ୍ୟାମ୍ ଭାଙ୍ଗି ଦେବୁ' ସୁନାବେଡ଼ା ପରି ଆଦିବାସୀ ବହୁଳ ଅଞ୍ଚଳରେ ଆଜି ଚକାଚକ୍ ରାସ୍ତା, କୋଠାଘର, ଘାସର ଲନ୍, ପାର୍କ, ନୀଳଗିରି ଗଛର ସୁଖା ପତ୍ରରେ ଖର ଖର ହରିଣ, ସଂଭ୍ରାନ୍ତ ସ୍କୁଲ, କଲେଜ ହେଲେ ସ୍ଥାନୀୟ ଲୋକଙ୍କ ପତ୍ତା ଲା ପତ୍ତା । ବଡ଼ କଷ୍ଟ କଲେ ସହରଠୁ ଚାରି / ପାଞ୍ଚ କିଲୋ ମିଟର ଦୂର କେଉଁ ଝୁପୁଡ଼ି ବସ୍ତିରେ ଥୋକେ ମଣିଷ ମିଳିବେ, ଯେଉଁମାନେ କାଦୁଅ ଚିପୁଡ଼ି-ଚିପୁଡ଼ି ମାଛ ଖୋଜୁଥିବେ । ଏମିତି କାହିଁକି ?

ଏସବୁ ପ୍ରଶ୍ନର ଉତ୍ତର ଶିଳ୍ପାୟନକୁ ନେଇ ସମୃଦ୍ଧିର ବାଜା ବଜାଉଥିବା ବ୍ୟବସ୍ଥାକୁ ଦେବାକୁ ପଡ଼ିବ । ଏହି ସାମାନ ପ୍ରଶ୍ନ ଏକଦା ସବୁଠୁ ବେଶି ଶିଳ୍ପ ଥିବା ଏବଂ ନିକଟ ଭବିଷ୍ୟତରେ ବହୁ ଶିଳ୍ପର ଭୂଖଣ୍ଡ ହେବାକୁ ଯାଉଥିବା ଝାରସୁଗୁଡ଼ା ଜିଲ୍ଲା ପାଇଁ ମଧ୍ୟ ସେତିକି ପ୍ରଯୁଜ୍ୟ । ଆଗଥର ହୋଇଥିବା ଶିଳ୍ପାୟନର ତିନି, ଚାରି ଦଶନ୍ଧି ପରେ ଝାରସୁଗୁଡ଼ା କଲେଜ ତରଫରୁ ହୋଇଥିବା ଏକ ସେମିନାରରେ ବିଶେଷଜ୍ଞ ମାନେ ତାଙ୍କ ଗବେଷଣା ଲବ୍ଧ ତଥ୍ୟ ପରସିଥିଲେ । ସେଇ ତଥ୍ୟ ଅନୁଯାୟୀ ଝାରସୁଗୁଡ଼ା ସହରର ଏକ ନିର୍ଦ୍ଦିଷ୍ଟ ବର୍ଗ (ଯେଉଁମାନେ ଶତକଡ଼ା ର ଗଣିତରେ ଆସିବେ ନାହିଁ ) ର ଆର୍ଥିକ ମାନଦଣ୍ଡ କିଛିଟା ଉନ୍ନତ ହୋଇ ଥିବା ବେଳେ ଜିଲ୍ଲାରେ ଥିବା ସମସ୍ତ ବ୍ଲକର ଉନ୍ନତି ଆଗ ଭଳି ସ୍ଥିର ହୋଇ ରହିଥିଲା । ବଂର ପ୍ରଦୂଷଣ ସାଙ୍ଗକୁ ରୋଗୀଣା ଲୋକଙ୍କ ସଂଖ୍ୟା ବଢ଼ି ଚାଲିଛି । ଏଇ ଜିଲ୍ଲାର ବାକି ବ୍ଲକ ଗୁଡ଼ିକ ଯେଉଁ ପଛୁଆକୁ ସେଇ ପଛୁଆ । ଶିକ୍ଷା ଓ ସ୍ୱାସ୍ଥ୍ୟ ସୁବିଧାରେ କୌଣସି ଗୁଣାତ୍ମକ ପରିବର୍ତ୍ତନ ହୋଇନାହିଁ । ଲଇକେରା ଓ କିରିମିରା ପରି ବ୍ଲକରେ ହୋଇଛି କଣ ? ଆଗର ଶିଳ୍ପାନୁଷ୍ଠାନ ଗୁଡ଼ିକ ସବୁ ବନ୍ଦ ହୋଇସାରିଛି । ବନ୍ଦ ଶିଳ୍ପାନୁଷ୍ଠାନର ହଜାର ହଜାର କର୍ମଚାରୀ ଆଜି ବେକାର । ପୁଣି ଥରେ ସେଇ ପୁରୁଣା ରାଗର ନୂଆ ଆଳାପ ହୋଇଯାଇଛି । ଛତୁଫୁଟା ସ୍ପଞ୍ଜ ଆଇରନ୍ ଓ ଭୂଷଣ ଷ୍ଟିଲ, ତାପଜ ବିଦ୍ୟୁତ, ବେଦାନ୍ତ , ଆଦିତ୍ୟ ପ୍ରକଳ୍ପ ସବୁ ଝାରସୁଗୁଡ଼ା ଓ ସମ୍ବଲପୁର ଅଞ୍ଚଳର ଭବିଷ୍ୟତକୁ କୋଉ ଦିଗରେ ନେବେ ସେଥିନେଇ ନାନା ଆଶଙ୍କା ଉପୁଜୁଛି । ସେ ବାବଦରେ ଆଲୋଚନା ଆଉ କେତେବେଳେ ।

ରାଉରକେଲା, ତାଳଚେର, ଏମ୍-ସି-ଏଲ କାମ କରୁଥିବା କୋଇଲା ଖଣି ଅଞ୍ଚଳ ଓ ସୁନ୍ଦରଗଡ଼ ତଥା କେନ୍ଦୁଝରର ଖଣି ଅଞ୍ଚଳ କଣ ଆମେରିକା ଓ ବ୍ରିଟେନ ପରି ସମୃଦ୍ଧିର ସ୍ୱାଦ ଚାଖୁଛି ? ଏ ପ୍ରଶ୍ନର ଉତ୍ତର ବେଶ୍ ସ୍ପଷ୍ଟ । ଏ ସବୁ ଅଞ୍ଚଳରେ ଆଙ୍ଗୁଠି ଗଣା କିଛି ଲୋକ 'ଅତି ସମ୍ପର୍ଣ୍ଣ ଶ୍ରେଣୀ'ର ତାଲିକାରେ ନିଜ ନାଁ ଲେଖେଇଛନ୍ତି । କିଛି ବ୍ୟବସାୟୀ, ଅମଲା ମାଲଦାର ହୋଇଛନ୍ତି । ହେଲେ ବାକି ଲୋକଙ୍କର ଭାଗ୍ୟ ଯେଉଁ ତିମିରକୁ ସେଇ ତିମିରରେ । ଏପରିକି ଏହି ପ୍ରକ୍ରିୟାରେ ସମ୍ବଲପୁର, ରାଉରକେଲା, ଢେଙ୍କାନାଳ, ଅନୁଗୁଳ, ଝାରସୁଗୁଡ଼ା ପରି ସହରର ଶିକ୍ଷା ଓ ସ୍ୱାସ୍ଥ୍ୟ ସେବାରେ କିଛି ଗୁଣାତ୍ମକ ପରିବର୍ତ୍ତନ ଘଟିଛିକି ? ଯାହା ହୋଇଛି ସେଥରେ ଆମେ ସନ୍ତୁଷ୍ଟ କି ? ଯାହା କିଛି ବି ହୋଇଛି ଲୋକ ବା ସରକାରୀ ପୁଂଜିରେ ହୋଇଛି । ସେଥିରେ ଏ ଖଣି ଓ କାରଖାନାର ଭୂମିକା କେତେ ?

**ପ୍ରାକୃତିକ ସଂପଦର ପ୍ରାଚୁର୍ଯ୍ୟ ଓ ସ୍ଥାନୀୟ ଲୋକର ବିକାଶ:-** ପ୍ରଥମ ମିଥ୍‌ର ଉତ୍ତର ସହିତ ଦ୍ୱିତୀୟ ମିଥ୍‌ର ଉତ୍ତରରେ ନିହିତ ହୋଇ ରହିଛି । ଓଡ଼ିଶାର ଖଣି, ଜଙ୍ଗଲ ଓ ପାଣି ସମ୍ପଦକୁ ଦେଖାଇ ଅନେକେ ଗର୍ବ କରି କହନ୍ତି -"ଓଡ଼ିଶା ଦରିଦ୍ର ନୁହେଁ । ଏ

ସବୁର ବ୍ୟବହାର କରି ଆମେ ସମୃଦ୍ଧ ହୋଇ ପାରିବ ।" କୋଶଳ ରାଜ୍ୟ ଦାବୀ କରୁଥିବା ବନ୍ଧୁମାନେ କହନ୍ତି- " ପଶ୍ଚିମ ଓଡ଼ିଶା ପ୍ରାକୃତିକ ସମ୍ପଦରେ ଭରପୁର । ଉପକୂଳର ଶୋଷଣରୁ ମୁକ୍ତ ହେଲେ ଆମେ ଏ ସବୁ ସମ୍ପଦର ବ୍ୟବହାର କରି ଧନୀ ହୋଇପାରିବୁ ।" ଏଭଳି ବକ୍ତବ୍ୟ ରଖୁଥିବା ଲୋକେ ଆଧୁନିକ ସଂସ୍କୃତି ଓ ସଭ୍ୟତାର ଯେଉଁ ଇତିହାସ ରହିଛି, ସେସବୁ ସମ୍ବନ୍ଧରେ ଅଜ୍ଞ ବୋଲି କହିବାକୁ ହେବ । ଇତିହାସର ପୃଷ୍ଠା ଲେଉଟାଇଲେ ଆମେ ଜାଣି ପାରିବା ଯେ ଯେଉଁ ମାନଙ୍କର ଭିଟାମାଟି, ପ୍ରାକୃତିକ ସମ୍ପଦ, ଖଣି ଏବଂ ଜଙ୍ଗଲରେ ପରିପୂର୍ଣ୍ଣ, ସେମାନେ ହେଉଛନ୍ତି ଅଭିଶପ୍ତ ଲୋକ । ଆମେରିକାର ଲୋହିତ ଭାରତୀୟଙ୍କଠୁ ଆରମ୍ଭ କରି ନାଇଜେରିଆର ଓଗୋନି, ଆଫ୍ରିକାର ଆଦିବାସୀ ସମୂହ ଓ ରାୟଗଡ଼ା, ଲାଞ୍ଜିଗଡ଼ର କନ୍ଧ ସଭିଏଁ ଅଭିଶପ୍ତ । କିଶନ୍ ପଟ୍ଟନାୟକଙ୍କ ଭାଷାରେ "ଇରାକର ଶିଶୁ ମାନଙ୍କର ଦୁଃର୍ଭାଗ୍ୟ ଯେ ସେମାନଙ୍କର ଭୂଇଁ, ତୈଳ ସମ୍ପର୍ଣ୍ଣ । ଆଧୁନିକ ସଭ୍ୟତାର ଯେ କୌଣସି ଅଣଶ୍ୱେତ ଜନ ସମୂହର ମାତୃଭୂମି ଯଦି ରତ୍ନଗର୍ଭା ହୋଇଥିବ ତାହାକୁ ଧ୍ୱସ୍ତ ହେବାକୁ ପଡ଼ିବ । ସେମାନେ ହୁଏତ ଦାରିଦ୍ର୍ୟରେ ତଳିତଳାନ୍ତ ହେବେ, କିମ୍ବା ଦାସ ହେବେ ।" ଏହି କଥାର ସତ୍ୟତା ବୁଝିବା ପାଇଁ ଆଫ୍ରିକା ଯିବା ଦରକାର ନାହିଁ । ଝାରଖଣ୍ଡ, ଓଡ଼ିଶା ଓ ଛତିଶଗଡ଼ ରାଜ୍ୟର ଯେଉଁ ଅଞ୍ଚଳରେ ଲୁହାପଥର କୋଇଲା, କ୍ରୋମାଇଟ୍, ବକ୍ସାଇଟ୍ ଅଛି ବା ଥିଲା ପଛୁଆ ଝାରଖଣ୍ଡ, ଓଡ଼ିଶା ଓ ଛତିଶଗଡ଼ ଭିତରେ ସେମାନେ ସର୍ବାଧିକ ପଛୁଆ ଅଂଚଳ । ଏମିତି କାହିଁକି ? ଖଣି ଅଂଚଳର ମଣିଷ ଖଣିର ମାଲିକ ହୋଇପାରୁ ନାହିଁ । ଖଣି ସମ୍ପଦ ଅଛି ବୋଲି ଜଣା ପଡ଼ିଲା ପରେ ତାକୁ ତାର ନିଜ ମାଟିରେ ବି ଯାଗା ମିଳି ନାହିଁ । ଯାହା ହାତରେ ପୁଞ୍ଜି ଓ ପ୍ରଯୁକ୍ତି ବିଦ୍ୟା ଅଛି, ସେ ଉଭୟ ଦେଶ ଓ ବିଦେଶରେ ଥିବା ସଂପଦର ମାଲିକ ହୋଇଯିବ । ଏହି ନିୟମକୁ ତୁମେ ପୁଞ୍ଜିବାଦୀ - ସାମ୍ରାଜ୍ୟବାଦୀ ବ୍ୟବସ୍ଥା କହିପାର କିମ୍ବା ଆଜିର ସମୟରେ ଜଗତୀକରଣ ! ସଂପଦ ଥିବା ଅଞ୍ଚଳ ଗୁଡ଼ିକ ପୁଞ୍ଜି ଓ ପ୍ରଯୁକ୍ତି ଥିବା ଦେଶ ବା ଶ୍ରେଣୀର ଉପନିବେଶ ଭାବରେ ଶୋଷିତ ହୁଏ । ଏହି ଉପନିବେଶିକ ଶୋଷଣକୁ ସମର୍ଥନ କରୁଥିବା ବିକାଶ ନୀତି, ଢାଞ୍ଚା ଚାଲିଥିବା ଯାଏ ଓ ସେହି ଅନୁରୂପ ପ୍ରଯୁକ୍ତିର ବ୍ୟବହାର ହେଉଥିବା ଯାଏଁ ସ୍ଥାନୀୟ ଅଞ୍ଚଳର ଲୋକ ଅଭିଶପ୍ତ ହେବାକୁ ବାଧ୍ୟ !

**ଆମେ କେମିତି ବ୍ୟବସ୍ଥା ଓ ବିକାଶ ଚାହୁଁ:** ଶିଳ୍ପାୟନ ସମ୍ପର୍କିତ ପ୍ରଶ୍ନ ଗୁଡ଼ିକର ଉତ୍ତର ପୂର୍ବରୁ ଆମକୁ ଆଉ କିଛି ପ୍ରଶ୍ନର ଉତ୍ତର ଦେବାକୁ ହେବ । ଆମେ କି ରକମର ବ୍ୟବସ୍ଥା ଚାହୁଁ? କେଉଁ ପ୍ରକାରର ବିକାଶ ଚାହୁଁ । ୧. ଏମିତି ଏକ ବ୍ୟବସ୍ଥା, ସେ ବିଶ୍ୱ ବ୍ୟବସ୍ଥା ହେଉକି ଜାତୀୟ , ରାଜ୍ୟ ଅବା ସ୍ଥାନୀୟ, ଯେଉଁଥିରେ ପ୍ରତିଟି ମଣିଷ ଦେଶ, ଧର୍ମ, ଜାତି, ଭାଷା ଓ ଅଞ୍ଚଳ ନିର୍ବିଶେଷରେ ନିଜକୁ ବ୍ୟବସ୍ଥାର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ଭାବୁଥିବ, ତଥା

ତାର ଅସ୍ତିତ୍ୱ ଓ ଅସ୍ମିତା ଉଭୟ ଟାକୁ ଜାହିର କରିପାରୁଥିବ । ନିଷ୍ପତ୍ତିର ପ୍ରକ୍ରିୟା ଓ କେନ୍ଦ୍ର ଗୁଡ଼ିକରେ ରେ ତାର କଥାର ଗୁରୁତ୍ୱ ରହିବ, ତା କଥା ଶୁଣାଯିବ । ୨ - ଅନ୍ୟଟି ହେଲା, ପ୍ରତିଟି ମଣିଷକୁ ସ୍ୱାଭିମାନ ସହ ଗୋଟିଏ ସୁସ୍ଥ ଜୀବନ ବଞ୍ଚିବାର ପର୍ଯ୍ୟାପ୍ତ ସୁବିଧା-ସୁଯୋଗ ମିଳୁଥିବ । ମାନସିକ, ଶାରିରୀକ ଶ୍ରମ ପାଇଁ ଅବସର ଥିବ । ଶିକ୍ଷା, ସ୍ୱାସ୍ଥ୍ୟର ସର୍ବନିମ୍ନ ସୁବିଧା ଓ ସ୍ୱାସ୍ଥ୍ୟକର ପରିବେଶ ଥିବ । ଏକ ସୀମିତ ସମ୍ପନ୍ନତା ସହ ସମସ୍ତଙ୍କ ପାଇଁ ସମ୍ମାନ ଜନକ ଜୀବନ ସ୍ତର । ସରଳରେ କହିଲେ ଖାଦ୍ୟ, ବସ୍ତ୍ର, ବାସଗୃହ ସହ ମଣିଷ ପରି ମଣିଷଟିଏ ହୋଇ ଜିଇଁବା ଲାଗି ଶିକ୍ଷା ଓ ସ୍ୱାସ୍ଥ୍ୟର ବ୍ୟବସ୍ଥା ଉପଲବ୍ଧ ଥିବ । ଏହି ସର୍ବନିମ୍ନ ସୁବିଧା ପାଇଁ ଅନ୍ତତଃ ତାକୁ ପ୍ରତିଯୋଗିତା କରିବାକୁ ପଡୁନଥିବ ।ଏହି ଦୁଇ ରକମ ଲକ୍ଷ୍ୟ ହାସଲ ବିନା ଆମେ କୌଣସି ବ୍ୟବସ୍ଥାକୁ ଉତ୍ତମ ବ୍ୟବସ୍ଥା ବୋଲି କହି ପାରବା ନାହିଁ । ଦୁର୍ଭାଗ୍ୟର ବିଷୟ ଏହି ଯେ ପ୍ରଥମ ଲକ୍ଷ୍ୟ ତ ଦୂରର କଥା, ଦ୍ୱିତୀୟ ଲକ୍ଷ୍ୟଟିକୁ ବି ଆମେ ପୂରଣ କରିପାରୁନୁ । ଅନ୍ତତଃ ଏହି ଦ୍ୱତୀୟ ଲକ୍ଷଟି ପୂରଣ କରିବା ଆମର ସର୍ବନିମ୍ନ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେବା ଜରୁରୀ । ଏହି ଲକ୍ଷ୍ୟ ହାସଲ 'ବିକାଶ'ର ପ୍ରଥମ ସର୍ତ୍ତ ହେବା ଆବଶ୍ୟକ ଏବଂ ସେ ଦିଗରେ ଜମି, ଜଙ୍ଗଲ, ଜଳ ଓ ଖଣି ସମ୍ପଦକୁ କେମିତି ବିନିଯୋଗ କରିହେବ ଓ ସେଥିରେ ଶିକ୍ଷର ଭୂମିକା କଣ ହେବ ତାହା ହେଲା ଅସଲ ପ୍ରଶ୍ନ । ସ୍ୱାଭିମାନ ଓ ନ୍ୟାୟ ପୂର୍ଣ୍ଣ ଜୀବନ ପାଇଁ ପ୍ରାକୃତିକ ସମ୍ପଦ ଉପରେ ଲୋକଙ୍କର ନିୟନ୍ତ୍ରଣ, ଦେଶ ଓ ଲୋକଙ୍କ ଅସଲ ଚାହିଦାର ସ୍ୱରୂପ ନିରୂପଣ ଭଳି ଜଟିଳ ପ୍ରଶ୍ନ ଗୁଡ଼ିକ ଗମ୍ଭୀର ଆଲୋଚନାର ଅପେକ୍ଷା ରଖେ । ସର୍ବନିମ୍ନ ଲକ୍ଷ୍ୟ ପୂରଣ ଯଦି ଯୋଜନା ନୀତି ଓ ନିଷ୍ପତିର କେନ୍ଦ୍ରରେ ରହିବ ଏବଂ ସେ ଅନୁରୂପ ଶିକ୍ଷାୟନ ହେବ ତେବେ ତାହା ଠିକ୍ ଅର୍ଥରେ ଆମକୁ ନ୍ୟାୟ ଆଧାରିତ ସମୃଦ୍ଧି ଆଡ଼କୁ ନେବ ।

ସେ ଅନୁରୂପ ଶିକ୍ଷ ସେତେବେଳେ ସମ୍ଭବ ଯେତେବେଳେ ଦେଶର 'ରାଜନୀତି' ସେଇ ସର୍ବନିମ୍ନ ଲକ୍ଷ୍ୟ ପୂରଣକୁ ପ୍ରାଥମିକତା ଦେଉଥିବ । ସେ ଅନୁଯାୟୀ ଦେଶର ଅର୍ଥନୀତି ଓ ବିକାଶ ନୀତି ସ୍ଥିର କରୁଥିବ । ଦେଶର ରାଜନୈତିକ ଅର୍ଥନୀତିରୁ କୌଣସି ରାଜ୍ୟକୁ ଅଲଗା କରି ଦେଖି ହେବ ନାହିଁ । ଭାରତ ସ୍ୱାଧୀନ ହେଲା ବେଳକୁ ଆମ ଦେଶର ବିକାଶ ପାଇଁ ଆମେ କାହାକୁ ମୋଡ଼େଲ କରିବା, କେଉଁ ବିଚାରକୁ ଆଧାର କରି ବିକାଶ ନୀତି ତିଆରିବା, ଏସବୁ ପ୍ରଶ୍ନ ଦେଶ ନିର୍ମାତାଙ୍କ ସାମ୍ନାରେ ଥିଲା । ମୋଟା ମୋଟି ଭାବରେ ଦୁଇଟି ଧାରା ଆମ ନେତୃବୃନ୍ଦଙ୍କ ସାମ୍ନାରେ ଥିଲା ।

**ଗାନ୍ଧି ଓ ମାଓଙ୍କ ବିକାଶ ଚିନ୍ତା:-** ପ୍ରଥମଟି ହେଲା ଗାନ୍ଧିଙ୍କ ଧାରା ଏବଂ ତାଙ୍କ ନିକଟବର୍ତ୍ତୀ ଧାରା ଥିଲା ଚୀନ୍‌ର ମାଓଙ୍କ ଧାରା । ଉଭୟଙ୍କ ପରିକଳ୍ପନାରେ 'ନ୍ୟାୟ' ଉପରେ

ଜୋର ଥିଲା । ଦୁହେଁ ସମବଣ୍ଟନ ଉପରେ ଗୁରୁତ୍ୱ ଦେଉଥିଲେ । ଗାନ୍ଧୀ ଆଧୁନିକ, ସହରୀ ସୁଖ ସମୃଦ୍ଧି ପ୍ରଦାନକାରୀ, ସବୁରକମର ବିଳାସ ଓ ଯନ୍ତ୍ର କୌଶଳକୁ ତ୍ୟାଗ କରି ଏକ ମିତବ୍ୟୟୀ ସମାଜର ଚିତ୍ର ଦେଖୁଥିଲେ । ମୋଟା ମୋଟି ଭାବରେ ସେ ସହର ବିରୋଧୀ ଥିଲେ । ସେ ମୁଖ୍ୟତଃ ଗ୍ରାମ୍ୟଭିତ୍ତିକ, କୃଷି ଭିତ୍ତିକ ତଥା ଶ୍ରମ ଆଧାରିତ ପ୍ରଯୁକ୍ତି ଓ ଉତ୍ପାଦନ ବ୍ୟବସ୍ଥାର ପକ୍ଷଧର ଥିଲେ । ଗୃହ ଶିଳ୍ପ, ହସ୍ତ ଶିଳ୍ପ, କୁଟୀର ଶିଳ୍ପ ଉପରେ ଗୁରୁତ୍ୱଆରୋପ କରୁଥିଲେ । ଅବଶ୍ୟ ଏହି କଥା କହିବାକୁ ପଡ଼ିବ ଯେ ଅସ୍ପୃଶ୍ୟ ଦଳିତ ଲୋକ ମାନେ ସାମ୍ନା କରୁଥିବା, ସାମାଜିକ ଓ ଆର୍ଥିକ ସମସ୍ୟାର ଯଥାଯଥ ସମାଧାନ ଦିଗରେ ତାଙ୍କ ଦୃଷ୍ଟି ବା ବିଚାରରେ ପୂର୍ଣ୍ଣତା ନ ଥିଲା । ଅନ୍ୟ ଦିଗରେ 'ମାଓ' ସହରୀ କରଣକୁ ସମର୍ଥନ ଦେଉଥିଲେ । ଉତ୍ପାଦନର ସାଧନ ଉପରେ ଜନ ସାଧାରଣଙ୍କ ନିୟନ୍ତ୍ରଣ ରହିଲେ 'ଯନ୍ତ୍ର ବିଜ୍ଞାନ'ର ବିନିଯୋଗ କରି ଧନ ସମ୍ପତ୍ତି ସୃଷ୍ଟି କରାଯାଇ ପାରିବ ଏବଂ ତ ଦ୍ୱାରା ପ୍ରତ୍ୟେକ ନାଗରିକର ଜୀବନସ୍ତର କୁ ଉପରକୁ ଉଠାଯାଇ ପାରିବ ବୋଲି ତାଙ୍କର ବିଶ୍ୱାସ ଥିଲା । ନିଜର ବିକାଶ ଦୃଷ୍ଟିକୁ ସାକାର କରିବା ପାଇଁ ସେ କ୍ଷମତା ହାସଲ କଲେ ଓ ସମତା ମୂଳକ ସଂସ୍କାର କାର୍ଯ୍ୟକ୍ରମ ଗୁଡ଼ିକୁ କାର୍ଯ୍ୟକାରୀ କରିଥିଲେ । ଚୀନର ଜୀବନ ନିରଡ଼ମ୍ବର ଥିଲା । ଜିଲ୍ଲାସ୍ତରରେ ଶିଳ୍ପ ପ୍ରତିଷ୍ଠା ପାଇଁ ପରମ୍ପରା ଗତ କ୍ଷୁଦ୍ରଯନ୍ତ୍ର ବିଜ୍ଞାନକୁ ପ୍ରାଧାନ୍ୟ ଦିଆଗଲା । କୃଷି କ୍ଷେତ୍ରରେ ସୀମିତ ଯାନ୍ତ୍ରିକୀକରଣ କରାଗଲା । ଜନ ସାଧାରଣଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟ ତଥା ରୋଜଗାର ପ୍ରଦାନ କରି ଶସକ୍ତ କରାଗଲା । ଉତ୍ପାଦନ ବ୍ୟବସ୍ଥାକୁ ବିକେନ୍ଦ୍ରୀତ କରିବା ସହ ସମବଣ୍ଟନ ଉପରେ ଜୋର ଦିଆଯାଇଥିଲା । ଚୀନ୍ ଅବଶ୍ୟ ୧୯୮୬ ପରଠୁ 'ମାଓ' ଙ୍କ ବିକାଶ ଦୃଷ୍ଟିର ବିପରୀତ ଦିଗରେ ଯିବାକୁ ଆରମ୍ଭ କଲା । ଅବଶ୍ୟ ସେତେବେଳକୁ ଚୀନର ଅର୍ଥନୀତି ବେଶ୍ ଦୃଢ଼ ହୋଇ ସାରିଥିଲା ।ଚୀନର ଅର୍ଥନୀତି ଓ ଶିଳ୍ପନୀତି ସମ୍ପର୍କରେ ବିଷଦ ଆଲୋଚନାର ଆବଶ୍ୟକତା ରହିଛି । ମାତ୍ର ଏହି ପ୍ରବନ୍ଧରେ ତାହା ସମ୍ଭବ ନୁହେଁ ।

**ସଂଭ୍ରାନ୍ତ ଶ୍ରେଣୀର ବିକାଶ ଚିନ୍ତା:-** ଭାରତର ଶାସକ ଶ୍ରେଣୀ ଗାନ୍ଧିଙ୍କୁ ଅପଚରା ଓ ଅପ୍ରାସଙ୍ଗିକ କରିଦେଲେ । ତାଙ୍କ କଳ୍ପିତ ଭାରତର ଚିତ୍ର ଆମେ ତାଙ୍କ ଲିଖିତ 'ହିନ୍ଦ ସ୍ୱରାଜ' ବହିରୁ ପାଇ ପାରିବା । ଜିଇଁ ଥାଉ ଥାଉ ତାଙ୍କ ବିଚାରକୁ ମରହଟ୍ଟିଆ କହି ହସରେ ଉଡ଼େଇ ଦିଆଗଲା । ଚୀନ ବା ମାଓଙ୍କ ବିଚାରକୁ ଭାରତର ଶାସକ ବର୍ଗ ଅଗ୍ରାହ୍ୟ କଲେ । ବିଶ୍ୱରେ ଆଉ ଏକ ଚାକଚାକ୍ୟର ଧାରା ଥିଲା । 'ପାଶ୍ଚତ୍ୟର ଧାରା' । ସେଇ ଧାର କରା ବିଚାରର ଅସଲ ମନ୍ତ୍ର ହେଲା, ଭାରତ ଭଳି ଦେଶରେ ସମତା ମୂଳକ ସମାଜର ଅର୍ଥ 'ଦାରିଦ୍ର୍ୟର ସମବଣ୍ଟନ' । ଏହା ଦ୍ୱାରା ଦାରିଦ୍ର୍ୟ ବଢ଼ିବ । ଏଣୁ ପ୍ରଥମେ ଇପ୍‌ସିତ ସମୃଦ୍ଧି ଆସୁ ତା ପରେ ତାର ବଣ୍ଟନ ଆପେ ଆପେ ହୋଇଯିବ । ସମ୍ପତ୍ତି ଜମା ହେଉ, ଜମା ହେଲେ ତାହା ଆପେ ଆପେ ତଳକୁ

ଖସିବ ଓ ସବୁଲୋକଙ୍କ ପାଖକୁ ପହଞ୍ଚିବ । ଏହି ବିଚାର ଧରି ନେହେରୁ ଦେଶର ଶାସନ ଭାର ଗ୍ରହଣ କଲେ । ନେହେରୁଙ୍କ ଭଳି ଯେଉଁ ସଂଭ୍ରାନ୍ତ ମାନେ ପାଶ୍ଚାତ୍ୟରେ ପଢ଼ିଥିଲେ, ପାଶ୍ଚାତ୍ୟର ବ୍ୟାବସ୍ଥା ଦ୍ୱାରା ପ୍ରଭାବିତ ହୋଇଥିଲେ, ସେମାନଙ୍କ ହାତରେ ରହିଲା ଶାସନ । ତାଙ୍କର ଚିନ୍ତା ସବୁଥିଲା ନଗର କେନ୍ଦ୍ରିକ । ଆମେରିକା, ୟୁରୋପ ପରି ଦେଶର ସମୃଦ୍ଧି ଓ ବିଳାସୀ ଜୀବନ ତାଙ୍କୁ ହତ୍‌ଚକିତ କରି ରଖିଥିଲା । ତେଣୁ ଆମ ଦେଶରେ 'ସମାଜ ବାଦ'ର ଫମ୍ପା ସ୍ଲୋଗାନ ଭିତରେ ପୁଞ୍ଜିବାଦୀ - ଅର୍ଥନୀତି ଚାଲିଲା । ସମ୍ପତ୍ତି ଜମା ହୋଇ ଚାଲିଲା । କିଛି ଲୋକଙ୍କ ପାଖରେ ଅପର୍ଯ୍ୟାପ୍ତ ସମ୍ପତ୍ତି ଜମାହେଲା । ଏକ 'ଅତି ସମ୍ପୂର୍ଣ୍ଣ ମୁଷ୍ଟିମେୟ ଶ୍ରେଣୀ' ସୃଷ୍ଟି ହେଲା । ସମ୍ପତ୍ତିର ବଣ୍ଟନ ହେଲା ନାହିଁ କି ତାହା ସମାଜର ବାକି ବର୍ଗମାନଙ୍କ ପାଖକୁ ପହଞ୍ଚିଲା ନାହିଁ । ସମୃଦ୍ଧି କେବେ ବି ଇଚ୍ଛିତ ସ୍ତରକୁ ପହଞ୍ଚିଲା ନାହିଁ କିମ୍ବା ବଣ୍ଟନ ହେଲା ନାହିଁ ।

ପାଶ୍ଚାତ୍ୟର ପ୍ରଭାବରେ ଆସି ବୃହତ୍ତ ନଦୀ ବନ୍ଧ, ବୃହତ୍ତ ଶିଳ୍ପ ଓ ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟାକୁ ପ୍ରାଥମିକତା ଦିଆଗଲା । ପଞ୍ଚ ବାର୍ଷିକ ଯୋଜନା ମାଧ୍ୟମରେ ଏହି ଚିନ୍ତାଧାରା ଅନୁଯାୟୀ ତଥା କଥିତ ବିକାଶର ଯାତ୍ରା ଚାଲିଲା । ସେଇ ଦିନଠୁ ଆମ ଦେଶରେ ବି ଯନ୍ତ୍ର ବିଜ୍ଞାନ କେନ୍ଦ୍ରୀକ ବିକାଶ ଦୃଷ୍ଟି ପ୍ରାଧାନ୍ୟ ପାଇ ଆସିଛି । ତାର ପରିଣତି ଆଜି ଆମ ସାମ୍ନାରେ । ଦାରିଦ୍ର୍ୟ ସୀମା ରେଖା ତଳେ ଥିବା ବିଶ୍ୱର ସର୍ବାଧିକ ଲୋକ ଭାରତରେ ରହିଛନ୍ତି । ଖାଦ୍ୟ, ବସ୍ତ୍ର, ବାସଗୃହର ସର୍ବନିମ୍ନ ଲକ୍ଷ୍ୟ ଆଜି ବି ପୂରଣ ହୋଇପାରିନାହିଁ । ସମସ୍ତଙ୍କୁ ଶିକ୍ଷା ଓ ସର୍ବନିମ୍ନ ସ୍ୱାସ୍ଥ୍ୟ ସେବା ଯୋଗାଇବାରେ ଆମ ସରକାର ଆଜି ବି ଅକ୍ଷମ । ବୃହତ୍ତ ପରିକଳ୍ପନାର ଦାୟରେ କୃଷି ଜାତ, ଜଙ୍ଗଲ ଜାତ ସମ୍ପଦକୁ ନେଇ ସମ୍ଭବ ଶିଳ୍ପକୁ ପ୍ରାଥମିକତା ଦିଆଗଲା ନାହିଁ । କୁଟୀର ଶିଳ୍ପ, କ୍ଷୁଦ୍ର ଶିଳ୍ପକୁ ଅବହେଳା କରାଗଲା । ଗାଁ ଗୁଡ଼ିକୁ ଶୋଷଣ କରି କିଛି ସମୃଦ୍ଧ ସହର ଓ ଭବ୍ୟ ରାଜଧାନୀ ଗୁଡ଼ିକର ନିର୍ମାଣ ହେଲା । ଶିଳ୍ପ ବିକାଶ କହିଲେ, କେବଳ ବୃହତ୍ତ ଶିଳ୍ପ ଓ ଖଣିଜ ସମ୍ପଦ ଜନିତ ଶିଳ୍ପ ବୋଲି ଧରି ନିଆଗଲା । ଆମ ଦେଶର ସମ୍ପଦ, ଶ୍ରମର ଲୁଣ୍ଠନ ଓ ବଜାର ଉପରେ କବ୍‌ଜା ପାଇଁ ବ୍ରିଟିଶ ଇଣ୍ଡିଆ ଶିଳ୍ପାୟନର ଯେଉଁଧାରା ଚଳେଇଥିଲା, ସେଇ ଧାରାକୁ ସ୍ୱାଧୀନ ଭାରତର ଶାସକ ଶ୍ରେଣୀ ଜାରି ରଖିଲେ । ବିଶିଷ୍ଟ ବାମପନ୍ଥୀ, ଗଣନାଥ ପାତ୍ରଙ୍କ ଭାଷାରେ - 'ପୁଂଜି ସଘନ ଉତ୍ପାଦନ ବ୍ୟବସ୍ଥା । ଏହି ପୁଂଜିବାଦୀ ପୁଂଜି ସଘନ ବୃହଦାକାର ଯାନ୍ତ୍ରିକ ଉତ୍ପାଦନର ପରିଭାଷା ଆମ ଦେଶରେ ଶିଳ୍ପାୟନ ନାଁ ରେ ପରିଚିତ ।' ରାଉରକେଲା, ଦୁର୍ଗ, ଭିଲାଇ, ହୀରାକୁଦ, ଭାକ୍ରା ନଙ୍ଗଲ କୁ ବିକାଶର ମନ୍ଦିର ମାଳା ବୋଲି କୁହାଗଲା । 'ମିଶ୍ର ଅର୍ଥନୀତି' ନାଆଁରେ ଘରୋଇ ଶିଳ୍ପପତି ମାନଙ୍କୁ ଅନୈତିକ ଉପାୟରେ ପ୍ରୋତ୍ସାହିତ କରାଗଲା । ଟାଟା, ବିରଲା, ଶିଙ୍ଘାଣିଆ, ବାଟା, ମଫତଲାଲ ପରି ପରିବାର ଗୁଡ଼ିକ ଦିନ ଦୁଗୁନି ରାତ୍ ଚଉଗୁନି

ଉନ୍ନତି କଲେ । ଏହି ଏକ ଚାଟିଆ ବ୍ୟବସାୟର ବିକାଶ ସଂବଧରେ ପୁସ୍ତିକାର ଶେଷ ଆଡକୁ ଏକ ତଥ୍ୟ ରହିଛି । ସେହି ଧାରା ଓଡ଼ିଶାରେ ବି ଚାଲିଲା । ଏହି କ୍ରମରେ ଆମର ଲୁହା ପଥର, ଚୁନ ପଥର ଓ ଡୋଲାମାଇଟକୁ ୯୦ ବର୍ଷ ହେଲା ଲୁଣ୍ଠନ କରି ଚାଲିଛି ଟାଟା । ଏ ସଂବଧରେ ଏକ ରିପୋର୍ଟ ପୁସ୍ତିକାର ଶେଷ ଭାଗରେ ଦିଆ ଯାଇଛି ।

ଶିଳ୍ପାୟନର ଏଇ ଚରିତ୍ର 'ପୁଞ୍ଜି'କୁ ସୀମିତ ଲୋକଙ୍କ ହାଜରେ ଜମା କରେଇଲା । ତାର ବଣ୍ଟନ ହୋଇପାରିଲା ନାହିଁ । ଏକ ସୀମିତ ସଂଖ୍ୟାର ଅତି ସଂପନ୍ନ ଶ୍ରେଣୀ ସୃଷ୍ଟି ହେଲେ । ଏକଥାକୁ ଆଉ ଟିକେ ସରଳ କର କହିଲେ ଆମ ଶାସକ ଶ୍ରେଣୀ ସାମ୍ନାରେ ବିକାଶର ମଡ଼େଲ ଭାବରେ ଆମେରିକା ଓ ୟୁରୋପର ଢ଼ାଞ୍ଚା ରହିଲା । ସେମାନେ ଧରିନେଲେ ଯେ ଯେଉଁ ଯନ୍ତ୍ର ବିଜ୍ଞାନ ଓ ବିକାଶ ନୀତି 'ବିକଶିତ ଦେଶ' ଗୁଡ଼ିକ ପାଇଁ ଲାଭ ଦାୟକ ତାହା ଗରିବ ତଥା ଜନ ବହୁଳ 'ବିକାଶଶୀଳ ଦେଶ' ପାଇଁ ମଧ୍ୟ ସମାନ ଭାବରେ ଉପାଦେୟ । ଭାରତରେ ଉଚ୍ଚ ଶିକ୍ଷିତ ଶ୍ରେଣୀର ଦୃଢ଼ ବିଶ୍ୱାସ ଯେ ପ୍ରଚଳିତ ଯନ୍ତ୍ରବିଜ୍ଞାନ ଯୋଗୁଁ ହିଁ ୟୁରୋପ, ଆମେରିକା ଓ ଜାପାନ ବିକଶିତ ହୋଇପାରିଛନ୍ତି । ତେଣୁ ଭାରତ ବି ସେଇ ଯନ୍ତ୍ରବିଜ୍ଞାନ ବଳରେ ବିକଶିତ ହୋଇପାରିବ । ଅନୁକରଣର ଏଇ ରାଜନୀତି ଆମକୁ କୋଉଠି ପହଞ୍ଚାଇଛି ତାହା ଦେଖିବା କଥା । ପ୍ରତି ଦେଶ ଏପରିକି ବିଭିନ୍ନ ରାଜ୍ୟ ଓ ସ୍ଥାନୀୟ ଅଞ୍ଚଳର ଭୂଗୋଳ ଅଲଗା ଅଲଗା । ସମ୍ପଦ ଦୃଷ୍ଟିରୁ , ସେଠି ବସ ବାସ କରୁଥିବା ଲୋକ ସଂଖ୍ୟା, ଲୋକଙ୍କ ପାରମ୍ପରିକ ଜ୍ଞାନ କୌଶଳକୁ ଆଖି ଆଗରେ ରଖି ବିକାଶ ନୀତି ହେବା କଥା । ପ୍ରତି ଅଞ୍ଚଳର ଭୌଗଳିକ ଅବସ୍ଥିତି, ପ୍ରାକୃତିକ ସମ୍ପଦର ଉପସ୍ଥିତି ଏବଂ ଲୋକ ସଂଖ୍ୟା ଏବଂ ଚରିତ୍ର ଓ ଜ୍ଞାନ କୌଶଳରେ ଥିବା ଭିନ୍ନତା ଅନୁସାରେ ବିକାଶ ନୀତି । ସାରା ପୃଥିବୀ ପାଇଁ ଗୋଟିଏ ବିକାଶ ନୀତି, ଗୋଟିଏ ରକମର ଯନ୍ତ୍ର କୌଶଳ ହେଲେ, ତାହା ସମସ୍ତଙ୍କୁ ନ୍ୟାୟ ଦେବାତ ଦୂରର କଥା ସୀମିତ ସଂପନ୍ନତା ଓ ସ୍ୱାଭିମାନର ଜୀବନଟିଏ ବି ଦେଇ ପାରିବ ନାହିଁ । ସେଇ ଯନ୍ତ୍ର ବିଜ୍ଞାନ ଯେଉଁ ଦେଶ ବା ଶ୍ରେଣୀ ହାତରେ ରହିବ ସିଏ ଅନ୍ୟ ଦେଶ ଓ ଶ୍ରେଣୀର ଲୋକଙ୍କୁ ଶୋଷଣ କରି ଅତି ସଂପନ୍ନ ଓ ଅତି ସମୃଦ୍ଧ ଦେଶ ଓ ଶ୍ରେଣୀରେ ପରିବର୍ତ୍ତିତ ହେବ । ତାହା ଦୁନିଆକୁ ସାମ୍ରାଜ୍ୟ ଓ ପନିବେଶ ଏମିତି ଦୁଇ ଭାଗରେ ଭାଗ କରିବ । ଠିକ୍ ସେଇକଥା ଆଜି ବିଶ୍ୱରେ ଚାଲିଛି । ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ଦେଶଗୁଡ଼ିକ, ଆମେରିକା ୟୁରୋପର ଉପନିବେଶ ହୋଇ ରହିଛି ।

ଆମେ ଯଦି ଭାବୁଛୁ ସେଇ ବିକାଶ ଢ଼ାଞ୍ଚା ଅନୁକରଣ କରି, ପାଶ୍ଚାତ୍ୟର ଯନ୍ତ୍ର ବିଜ୍ଞାନକୁ ବ୍ୟବହାରରେ ଆଣି, ଭାରତକୁ କିମ୍ବା ଓଡ଼ିଶାକୁ ଶିଳ୍ପ ସମୃଦ୍ଧ ଦେଶ ଓ ରାଜ୍ୟରେ ପରିଣତ କରିହେବ, ତେବେ ଆମକୁ ଠିକ୍ କରିବାକୁ ପଡ଼ିବ, ଆମର ଉପନିବେଶ କେଉଁ

ଦେଶ କି ରାଜ୍ୟ ହେବେ କିମ୍ବା କୋଉ ଅଂଚଳ ବା ଶ୍ରେଣୀ ହେବ । ସେଥିପାଇଁ ଅନ୍ୟ କେତେକ ଜାତି ଓ ଅଞ୍ଚଳକୁ ଶୋଷଣ ନିମନ୍ତେ ଠାବ କରିବାକୁ ହେବ । ଏ ଯାଏଁ ପାଶ୍ଚାତ୍ୟ ଦେଶ ଗୁଡ଼ିକ ୟୁରୋପ ବାହାରେ ଥିବା ଜାତି ଓ ଅଞ୍ଚଳକୁ ଭାଗବଣ୍ଟା କରି ଶୋଷଣ ଚଳାଇଛନ୍ତି । ଆମ ପାଇଁ ଆଉ ଅନ୍ୟ ଇଲାକା ନାହିଁ । କେବଳ ଗୋଟିଏ କଥା ସମ୍ଭବ । ଆମେ ଆମ ଦେଶର, ରାଜ୍ୟର କିଛି ଅଞ୍ଚଳ ଓ ସମୁଦାୟକୁ ଶୋଷଣ କରି ଦେଶ ଭିତରେ ଛୋଟ ଛୋଟ ଆମେରିକା, ଇଂଲଣ୍ଡ, ତିଆରି କରି ପାରିବା । ଯାହାର ନିବାସୀ ହୋଇ ପାରିବେ ଭାରତର ସର୍ବମୋଟ ଜନ ସଂଖ୍ୟାର ଦୁଇ ଚାରି ଶତକଡା ଲୋକ । ଏଇଆ ହିଁ ଚାଲିଛି । ଆଙ୍ଗୁଠି ଗଣା କିଛି ଲୋକଙ୍କ ଏକ ଅତି ସଂପନ୍ନ ବର୍ଗ ଭବ୍ୟ ନଗର ଗୁଡିକରେ ରହି ବାକି ଅଂଚଳକୁ , ବାକି ସମୁଦାୟଙ୍କୁ ନିଜର ଉପନିବେଶ କରି ଶୋଷଣ ଓ ଲୁଣ୍ଠନ ଚଳାଇଛନ୍ତି । ଯାହାର ପରିଣତି ହେଉଛି ଉତ୍କଟ ଦାରିଦ୍ର୍ୟ, ନିରକ୍ଷରତା, ପୃଷ୍ଟି ହୀନତା । ଅର୍ଦ୍ଧାହାରରେ ଥିବା ଲୋକଙ୍କ ସଂଖ୍ୟା ସର୍ବମୋଟ ଜନ ସଂଖ୍ୟାର ପାଖାପାଖି ୪୦ ଶତକଡା । ବେକାରୀ ଓ ବେରୋଜଗାର ସମସ୍ୟାର କଥା ନ କହିବା ଭଲ । ଅବସ୍ଥା ଏପରି ହୋଇଛି ଯେ ଆମର ସରକାର, ସବୁ ଗରିବ ଲୋକଙ୍କୁ ବର୍ଷକୁ ୧୦୦ ଦିନର କାମ ଯୋଗାଇ ଦେବାର ଗ୍ୟାରେଣ୍ଟି ଦେଇ ପାରୁନାହିଁ । ଧନୀ ଓ ଗରିବ ଶ୍ରେଣୀ ଭିତରେ ବିଷମତା ୭୪ ଗୁଣ ହୋଇସାରିଛି । ୧୯୪୭ ପରଠୁ ଆମ ଦେଶରେ ଆଭ୍ୟନ୍ତରୀଣ ଉପନିବେଶବାଦ ଚାଲିଥିଲା । ୮୦ ଦଶକର ଶେଷ ଆଡକୁ ଆଭ୍ୟନ୍ତରଣୀ ଉପନିବେଶବାଦ ସହ ଆର୍ନ୍ତଜାତୀୟ ଉପନିବେଶବାଦର ଆରମ୍ଭ ହେଲା । ଏବେ ଆମେ ବହୁ ମୁଖୀ ଓ ବହୁ ସ୍ତରୀୟ ଶୋଷଣର ଶିକାର ହେଉଛୁଁ ।

**ଗଲା ୭୦ ବର୍ଷର ଶିଳ୍ପାୟନର ଏକ ସମୀକ୍ଷା:-** ଉପର ଲିଖିତ ପୃଷ୍ଠଭୂମି ଉପରେ ଏବେ ଆମେ ଗଲା ୭୦ ବର୍ଷର ଶିଳ୍ପାୟନର କିଛିଟା ସମୀକ୍ଷା କରିବା । ଆମେ ଏଠି କେବଳ ଓଡିଶାର ଶିଳ୍ପାୟନକୁ ବିଚାରକୁ ନେବା । ଶିଳ୍ପାୟନର ଐତିହାସିକ ଉପଲବ୍ଧି, ସାଂପ୍ରତିକ ଶିଳ୍ପାୟନର ଚରିତ୍ର ଓ ଉଦାରୀ କରଣ ନୀତି ଅନୁରୂପ ଶିଳ୍ପନୀତି କୁ କେନ୍ଦ୍ରରେ ରଖି ଆମେ ଆଲୋଚନାକୁ ଆଗକୁ ବଢ଼େଇବା । ଶିଳ୍ପ କହିଲେ - ବୃହତ୍ତ ଶିଳ୍ପ, ମଧ୍ୟମ ଶିଳ୍ପ , କ୍ଷୁଦ୍ର ଶିଳ୍ପ ଓ କୁଟୀର ଶିଳ୍ପ କଥା ଉଠେ । ପୁଣି କୃଷି ଓ ଜଂଗଲ ଆଧାରିତ, ଖଣି ଓ ପର୍ଯ୍ୟଟନ ଶିଳ୍ପର କଥା ରହିଛି । ରାଷ୍ଟ୍ରାୟତ ଶିଳ୍ପ, ଘରୋଇ ଶିଳ୍ପ , ରାଷ୍ଟ୍ରୀୟ -ବହୁ ରାଷ୍ଟ୍ରୀୟ କଂପାନୀ ଗୁଡିକର କଥା ବି ରହିଛି । ଏହି ବିଭାଗୀ କରଣ ସଂବଧରେ ଆପଣମାନଙ୍କର ଧାରଣା ରହିଛି । ଏଣୁ ତାର ବିଷଦ ଆଲୋଚନାର ଆବଶ୍ୟକତା ନାହିଁ । ଆଲୋଚନାର ଅସଲ ବିନ୍ଦୁ ହେଲା, ଏକ ଦେଶ ବିକଶିତ ହେବା ପାଇଁ, ଦେଶର ସବୁ ବର୍ଗର ଲୋକଙ୍କ ମାନ ଉନ୍ନତ କରିବା ପାଇଁ ଶିଳ୍ପାୟନ ଜରୁରୀ କି ? ଉତ୍ତର ହେବ ହଁ । ଫଳମୂଳ ସଂଗ୍ରହ ଓ ଶିକାରର ଯୁଗରେ ଆମେ ଆଉ ନାହୁଁ । ବହୁ

ପରିବର୍ତ୍ତନ, ଉଦ୍ଭାବନା ଓ ଆବିଷ୍କାର ଦେଇ ଆମେ ପହଁଚିଛୁ ଆଜିର ତଥାକଥିତ ଅତ୍ୟାଧୁନିକ ଯୁଗରେ । କେବଳ ପ୍ରତ୍ୟକ୍ଷ କୃଷି ଉତ୍ପାଦନ ଓ ଜଂଗଲ ଉତ୍ପାଦରୁ ଜୀବନକୁ ଏକ ଉନ୍ନତ ସ୍ତରକୁ ନେଇ ହେବ ନାହିଁ । *ଶିଳ୍ପାୟନ ହେଉ କିନ୍ତୁ ତାର ଚରିତ୍ର କଣ ହେବ ? ରୋଜଗାର ଓ ଚାହିଦା ଦୃଷ୍ଟିରୁ ହେବ ନା ଘରୋଇ କଂପାନୀର ଲାଭ ଓ ଲୋଭ ପାଇଁ ହେବ ? ବର୍ଗ ନିର୍ବିଶେଷରେ ସମସ୍ତଙ୍କର ଜୀବନ ସ୍ତରରେ ଉନ୍ନତି ଆଣିବା ପାଇଁ ହେବ ନା ଶାସକ ଓ ବ୍ୟବସାୟୀକ ଶ୍ରେଣୀର ଭୋଗ ଓ ବିଳାସ ପାଇଁ ହେବ ? ଏ ଶିଳ୍ପ ଗୁଡିକରେ କି ରକମର ପ୍ରଯୁକ୍ତି ଲାଗିବ ? ତାହା ଶ୍ରମ ଆଧାରିତ ହେବ ନା ମୁନାଫା ପାଇଁ ଯନ୍ତ୍ର ଆଧାରିତ ହେବ ? ଦେଶର ଆବଶ୍ୟକତା, ଲୋକ ଓ ଭୂଗୋଳକୁ ଦେଖି ଯନ୍ତ୍ର-ବିଜ୍ଞାନ ସ୍ଥିର ହେବ ନା ଅନ୍ଧ ଭାବରେ ପଶ୍ଚିମୀ ପ୍ରଯୁକ୍ତିର ଅନୁକରଣ ହେବ ? ଉତ୍ପାଦନର ସାଧନ ଓ ପ୍ରକ୍ରିୟା ଉପରେ ଲୋକଙ୍କ ନିୟନ୍ତ୍ରଣ ରହିବ ନା ସରକାରଙ୍କର କିମ୍ବା ଘରୋଇ ଦେଶୀ-ବିଦେଶୀ ମାଲିକଙ୍କ ହାତରେ ? ଉତ୍ପାଦରର ମାତ୍ରା, ଲୋକ ଓ ଦେଶର ଚାହିଦା ଅନୁସାରେ ହେବ ନା ଜାତୀୟ ଆନ୍ତର୍ଜାତୀୟ ବଜାରରେ ଦାବୀ ଅନୁଯାୟୀ ହେବ ? ଶିଳ୍ପ ଉତ୍ପାଦନ ପାଇଁ ଆବଶ୍ୟକ ହେଉଥିବା ପ୍ରାକୃତିକ ସଂପଦ ବିଶେଷ କରି ସୀମିତ ଖଣିଜ ସଂପଦକୁ ଉନ୍ନତ ଟେକ୍‌ନୋଲୋଜି ବ୍ୟବହାର କରି ସ୍ୱଳ୍ପ କେତୋଟି ବର୍ଷ ଭିତରେ ସାରି ଦିଆ ଯିବ ନା ଆସୁଥିବା ପିଢ଼ୀର ଲୋକଙ୍କ ପାଇଁ ସଂଚୟ କରି ରଖାଯିବ ? ସୀମିତ ଖଣିଜ ସଂପଦକୁ ରାଜସ୍ୱ ସଂଗ୍ରହ ବା ବିଦେଶୀ ମୁଦ୍ରା ସଂଗ୍ରହ ନାଁ ରେ ରପ୍ତାନି କରାଯିବା ଉଚିତ ହେଉଛି କି ନାହିଁ ? ସୁସ୍ଥ ପରିବେଶ, ସ୍ୱଚ୍ଛପାଣି, ଓ ପବନରେ ଜିଇଁବା ସମସ୍ତଙ୍କର ଜନ୍ମଗତ ଅଧିକାର । ଶିଳ୍ପ ଯୋଗୁଁ ହେଉଥିବା ପ୍ରଦୁଷଣର ସ୍ତରକୁ, ଏହି ଜନ୍ମଗତ ଅଧିକାରକୁ କ୍ଷୁର୍ଣ୍ଣ କରିବାର ସ୍ତର ପ୍ରର୍ଯ୍ୟନ୍ତ ନେବା ଠିକ୍ ହେଉଛି ? ଅଧିକ ମୁନାଫାକୁ ଅଗ୍ରାଧିକାର ଦେଇ ଶ୍ରମିକ ମାନଙ୍କୁ ଅସ୍ୱାସ୍ଥ୍ୟକର ପରିବେଶ ଭିତରେ କାମ କରିବା ପାଇଁ ବାଧ୍ୟ କରିବା ଯଥାର୍ଥ କି ?*

ଏ ସବୁ ପ୍ରଶ୍ନର ଉତ୍ତର ଖୁବ ଜଟିଳ ବି ଖୁବ ସରଳ ବି । ଏଇ ପ୍ରଶ୍ନ ଗୁଡ଼ିକର ଉତ୍ତର ସେତେବେଳେ ସରଳ ମନେ ହେବ, ଯେତେବେଳେ ଆମେ ବିକାଶର କେନ୍ଦ୍ରରେ ମଣିଷକୁ ରଖିବା । ସେ ମଣିଷ ବିକଶିତ ଦେଶର ହେଉ କି ବିକାଶଶୀଳ ଦେଶର ହେଉ । ସେ ଆଫ୍ରିକାର ହେଉ କି ଆମେରିକାର । ସିଏ ତଥାକଥିତ ଉଚ୍ଚ ଜାତିର ହେଉକି ଆଦିବାସୀ-ଦଳିତର ହେଉ । ନାରୀ ହେଉ କି ପୁରୁଷ ହେଉ । ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତ ମଣିଷ । ମଣିଷ ଏକ 'ପ୍ରଜାତି' ଭାବରେ ସଫଳ ବୋଲି କହିବାକୁ ଯେଉଁ ଦିଟି ଲକ୍ଷ୍ୟ କଥା ଆମେ ଆଗରୁ କହିଛୁ, ତାକୁ ଯଦି ବିକାଶ ନୀତିର ମୂଳମନ୍ତ୍ର କରାଯିବ ତେବେ ଉପର ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବାକୁ

ସହଜ ହେବ । ବିକାଶର ଲକ୍ଷ୍ୟ ହେବ ସ୍ୱାଭିମାନର ଜୀବନ ସହ ସବୁ ବର୍ଗର ସୀମିତ ସଂପନ୍ନତା । ପାଂଚଟି ଆଙ୍ଗୁଠି ଭିତରେ ଥିବା ବିଷମତାଠୁ ଅଧିକ ବିଷମତା ରହିବ ନାହିଁ । ପ୍ରକୃତିଦତ୍ତ ବିଷମତା ବାହାରେ ମଣିଷକୃତ ବିଷମତାକୁ ଲଗାମ ଦେବା ପାଇଁ ଏକ ଜନତନ୍ତ୍ରର ଆବଶ୍ୟକତା ରହିବ । ଆମେ ଏବେ ଆଲୋଚନାକୁ ଶିଳ୍ପ ସଂବନ୍ଧରେ ଥିବା ଆଉ କିଛି ଭ୍ରମ ଧାରଣା ସଂପର୍କରେ ଆଲୋଚନା କରିବା ।

ଆମର ପଢ଼ା ବହିରେ ଶିଳ୍ପାୟନର ଚିତ୍ର ରହିଛି । 'ରାଉରକେଲାରେ ଦିନ ରାତି, ଲୁହା ଢ଼ଳା ହୁଏ କେତେ ଜାତି' । ଚିମିନିଟିଏ ଥିବ ଧୂଆଁ ଉଠୁଥିବ । ବଡ଼ ବଡ଼ କାରଖାନା ବା ଯନ୍ତ୍ର, ଶହ ଶହ ଏକର ର ଜାଗା ମାଡ଼ି ବସିଥିବ । ଶିଳ୍ପାୟନ କହିଲେ ଏମିତି ଏକ ଚିତ୍ର ଆମର ଆଖି ଆଗରେ ଭାସି ଉଠେ । ପଢ଼ା ବହି, ସରକାରୀତନ୍ତ୍ରର ପ୍ରଚାରରେ ପ୍ରଭାବିତ ହୋଇ ଆମେ ଧରି ନେଇଛୁ ଶିଳ୍ପ କହିଲେ, କିଛି ଗୋଟିଏ ବଡ଼ ବଡ଼ ବା ବୃହତ୍ତ ଯେଉଁଠୁ ଚିମିନି ମାଧ୍ୟମରୁ ଧୂଆଁ ଉଠୁଥିବ । ତା ମାନେ ଖଣିଜ ସଂପଦର ବ୍ୟବହାର କରି ଯେଉଁ କାରଖାନା ଗୁଡ଼ିକ ଗଢ଼ି ଉଠିଛି କେବଳ ତାକୁ ହିଁ ଆମେ ଶିଳ୍ପ ବୋଲି ଚେତନ ଓ ଅବଚେତନ ସ୍ତରରେ ମାନି ଆସୁଛୁ । ଗୃହ ଶିଳ୍ପ, କୁଟୀର ଶିଳ୍ପ, ହସ୍ତ ଶିଳ୍ପ କଥା କୁହାଯାଉଥିଲେ ବି ଆମେ କେବେ ତାକୁ ଶିଳ୍ପ ବୋଲି ବିଚାର କରୁନା । କୃଷିଜାତ, ଜଂଗଲଜାତ ଦ୍ରବ୍ୟକୁ ନେଇ ହେଉଥିବା ଛୋଟ ଛୋଟ ଶିଳ୍ପ ଗୁଡ଼ିକୁ ଆମେ ହୃଦୟର ସହିତ ଶିଳ୍ପ ବୋଲି ମାନୁ ନା । କେବଳ ଏତିକି ନୁହେଁ ଆମେ ଯେବେ ଶିଳ୍ପ ବିକାଶ ବା ସାମଗ୍ରିକ ଭାବେ ବିକାଶ କଥା ଚିନ୍ତା କରୁ ଆମ ମୁଣ୍ଡରେ ଖଣିଜ ଶିଳ୍ପକୁ ହିଁ ଆସେ । ସେ ରକମର ଶିଳ୍ପଥିବା ଜାଗାକୁ ବିକଶିତ ଜାଗା ବୋଲି ଧରିଥାଉ । ଶୁଣିବାକୁ ମିଳେ ଅମୁକ ଜାଗାଟା ଡ଼େଭ୍‌ଲପ ହୋଇଗଲା । ଓଡ଼ିଶାର ଗାଁ ଗାଁ ରେ ଭଜାଯାଉଥିବା ମୁଢ଼ିକୁ ଆମେ ଶିଳ୍ପ ବୋଲି କହୁ ନା । ଗାଁ ଗାଁ ରେ ତିଆରି ହେଉଥିବା ବୁଣା ଲୁଗାକୁ , ତିଆରି ବଡ଼ି, ପାପଡ଼କୁ, କୁମ୍ଭାରର ମାଠିଆକୁ, ଟେରାକୋଟାକୁ, ଗାଁରେ ତିଆରି ହେଉଥିବା କୋଡ଼ି, କୋଦାଳକୁ ଶିଳ୍ପଜାତ ଦ୍ରବ୍ୟ ବୋଲି ଆମେ ମାନୁନା । ତେଲ ଘଣାକୁ ଯନ୍ତ୍ର ବୋଲି କହିବାକୁ ଆମେ ରାଜି ନୋହୁଁ । ଆମର ସୁନାରୀମାନଙ୍କ ସୁନା, ରୁପା, ତମ୍ବା, କଂସା, ପିତ୍ତଳ, ଓ ତାରକସି କାମକୁ ଶିଳ୍ପ କାମ ବୋଲି ଭାବୁ ନା । ଯଦିଓ ଏ ରକମର ଶିଳ୍ପରେ ବେଶି ପୁଂଜି ଲାଗେନା, ପ୍ରଦୂଷଣ ମୋଟେ ହୁଏ ନାହିଁ ଅଥଚ ବହୁ ଲୋକଙ୍କୁ ସୀମିତ ପରିମାଣରେ ହେଉ ପଛେ ରୋଜଗାର ମିଳେ ।

ଶିଳ୍ପ କାହିଁକି ଦରକାର ଓ କାହା ପାଇଁ ଦରକାର ? ଉତ୍ତର ହେବା କଥା -ଚାହିଦା ମୁତାବକ ଆବଶ୍ୟକୀୟ ଶିଳ୍ପଜାତ ଦ୍ରବ୍ୟ ଓ ଜିନିଷ ଲୋକଙ୍କୁ ଯୋଗାଇଦେବା ଓ ନୂତନ ରୋଜଗାର ସୃଷ୍ଟି କରିବା । ଏ ଲକ୍ଷ୍ୟକୁ କେତେ ଦୂର ପୂରଣ କରିପାରିଛେ ଆମର ଶିଳ୍ପାୟନ ଓ ଶିଳ୍ପନୀତି

ତାର ଟିକେ ବିଚାର ହେଉ ।

* ଓଡ଼ିଶାର ଖଣିଜ ପଥର ଖନନରେ ଗଲା ୭୦-୮୦ ବର୍ଷ ମଧ୍ୟରେ ପୁଂଜି ଲଗାଣ ହୋଇଛି ପ୍ରାୟ ୧୫୦୦୦ କୋଟି ଟଙ୍କା । * ୨୦୦୦ କୋଟି ଟଙ୍କାର ପୁଂଜି ଲଗାଣରେ ୩୪୨ ଟି ବଡ଼ ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା ହୋଇଛି । * ୧୫୫୦ କୋଟି ଟଙ୍କା ପୁଂଜି ଲଗାଣ ହୋଇ ୬୬୦୦୦ ରୁ ବେଶି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ହୋଇଛି । * ୬୦୦ କୋଟି ଟଙ୍କା ପୁଂଜି ଲଗେଇ ୧୫ ଲକ୍ଷରୁ ଅଧିକ କୁଟୀର ଶିଳ୍ପ ପ୍ରତିଷ୍ଠା ହୋଇଛି ।

## ନିଯୁକ୍ତି

| କୋଉଥିରେ | କେତେ |
|---|---|
| ଖଣିରେ | ୧ ଲକ୍ଷରୁ ଅଳ୍ପ ବେଶୀ |
| ବଡ଼ ଓ ମଧ୍ୟମ ଶିଳ୍ପ | ୧୩୦୦୦ ରୁ ଅଳ୍ପ ଅଧିକ |
| କ୍ଷୁଦ୍ର ଶିଳ୍ପ | ୨୬ ଲକ୍ଷ ୭୪ ହଜାର |

| କେଉଁଥିରେ | ପୁଁଜି ଲଗାଣର ମାତ୍ରା ଶତକଡ଼ାରେ % | ରୋଜଗାର ସୃଷ୍ଟି ଶତକଡ଼ାରେ % |
|---|---|---|
| ଖଣି | ୭୮ % | ୩ % |
| ବଡ଼ ଓ ମଧ୍ୟମ ଶିଳ୍ପ | ୧୧ % | ୨୫ % |
| କ୍ଷୁଦ୍ର ଶିଳ୍ପ | ୮ % | ୧୩ % |
| କୁଟୀର ଶିଳ୍ପ | ୩ % | ୮୧ % |

* ୧ କୋଟି ଲେଖାଏଁ ଟଙ୍କା ବଡ଼ ଓ ମଧ୍ୟମ ଶିଳ୍ପ, କ୍ଷୁଦ୍ର ଶିଳ୍ପ ଓ କୁଟୀର ଶିଳ୍ପରେ ଅଲଗା ଅଲଗା ଭାବେ ଖଟେଇଲେ ଯଥାକ୍ରମେ ୭,୪୦,୨୮୬,୪୪୭୫ ଜଣ କାମ ପାଇଥାନ୍ତି । ଏ ଅନୁଭବରୁ ଆମ ସରକାର କିଛି ଶିଖିବାକୁ ଚାହାଁନ୍ତି ନାହିଁ । ସେ କଥା ତାଙ୍କ ପୁଂଜି ନିବେଶ ଓ ଶିଳ୍ପ ନୀତି ରୁ ସ୍ପଷ୍ଟ ।

ବିସ୍ଥାପନ:- ଓଡ଼ିଶାର ବୃହତ୍ତ ନଦୀବନ୍ଧ, ବଡ଼ ବଡ଼ ଖଣି, ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠା ଫଳରେ ଓଡ଼ିଶାର ୩୦ ଲକ୍ଷ ଲୋକ ବାସଚ୍ୟୁତ ହୋଇସାରିଛନ୍ତି । ସେ ଭିତରୁ ଅଧିକାଂଶ ହେଲେ ଆଦିବାସୀ । ତା ପଛକୁ ସବୁଠୁ ବେଶୀ କ୍ଷତି ସହିଛନ୍ତି ଚାଷୀ ଓ ଦଳିତମାନେ । ଭୂମିହୀନ ଲୋକମାନେ ଗୋଷ୍ଠୀ ସଂପଦ (ଯାର ପଟ୍ଟା ନ ଥାଏ) ହରାଇ ଜୀବିକାହୀନ ହୋଇଛନ୍ତି । ଚାର, ମହୁଲ, ଟୋଲ, ଝାଡୁ, ଜଡ଼ିବୁଟି, ବାଉଁଶ, କେନ୍ଦୁପତ୍ର, ଲାଖ, ଝୁଣା, ପାଣିର ମାଛ, ତଥା ଗୋଚାରଣ ଭୂମି ସବୁ ହରାଇ ଉତ୍କଟ ବେକାରୀରେ ପଡ଼ିଛନ୍ତି । ତା ସାଙ୍ଗକୁ ରହିଛି ପ୍ରଦୂଷଣର ଦୁଃଖ ଓ ପ୍ରଦୂଷଣ ଜନିତ ରୋଗର ଯନ୍ତ୍ରଣା । ପ୍ରଦୁଷଣ ଯୋଗୁଁ ବହୁ ଅଂଚଳର ଚାଷଜମି ନଷ୍ଟ ହୋଇଯାଇଛି । ବ୍ୟାପକ ଜଙ୍ଗଲ କଟା ଯୋଗୁଁ ଲକ୍ଷ ଲକ୍ଷ ଲୋକ ଜଙ୍ଗଲ ସଂପଦ ହରାଇ ବାହାରକୁ ଦାଦନ ଖଟି ଯିବାକୁ ବାଧ୍ୟ ହେଉଛନ୍ତି । ଲକ୍ଷାଧିକ ଲୋକ, ଯେଉଁମାନେ ପୁରୁଣା ବ୍ୟବସ୍ଥାରେ କୌଳିକ ବୃତ୍ତିରେ ଥିଲେ, ନୂଆ ବ୍ୟବସ୍ଥାରେ ସେମାନେ ବି ବେକାର ହେଲେ ।

ଓଡ଼ିଶାର ଭିତ୍ତିଭୂମି : ଓଡ଼ିଶାବାସୀଙ୍କ ଭିତରୁ ୫୦ ଭାଗ ଲୋକ ଗରିବ ସୀମା ରେଖା ତଳେ ଥିବା ବେଳେ ଆଉ ୩୦ ଭାଗ ଲୋକ ଗରିବ ଓ ନିମ୍ନ ମଧ୍ୟବିତ୍ତ । ୮୦ ଭାଗ ଲୋକ ଆଜି ବି ପେଟ ପାଇଁ ଖାଦ୍ୟ, ପୋଷକ, ବାସଗୃହ ଓ ସର୍ବନିମ୍ନ ଶିକ୍ଷା ଓ ସ୍ୱାସ୍ଥ୍ୟସେବା ପାଇବା ପାଇଁ ସଂଗ୍ରାମରତ । ଏ ମାନଙ୍କର ଶିଳ୍ପଜାତ ଦ୍ରବ୍ୟର ଚାହିଦା ଅତି କମ୍ । ବାକି ୨୦ ଭାଗ ଲୋକ ମଧ୍ୟବିତ୍ତ ଓ ଧନୀ ଶ୍ରେଣୀର । ସେମାନଙ୍କର ଯାହା କିଛି ଚାହିଦା ରହିଛି ତାହା ଆଗରୁ ବଜାରରେ ମିଳୁଛି । ସେଥିପାଇଁ ଏତେ ବେଶି ଶିଳ୍ପଜାତ ଦ୍ରବ୍ୟ ଉତ୍ପାଦନର ଆବଶ୍ୟକତା ନାହିଁ । ୮୦ ଭାଗ ଲୋକଙ୍କର ଆୟ ନ ବଢ଼ିଲେ, ଶିଳ୍ପଜାତଦ୍ରବ୍ୟ ପାଇଁ ଚାହିଦା ବଢ଼ିବ ନାହିଁ । ଏହାର ଅର୍ଥ ହେଲା ଆଜି ଓଡ଼ିଶାରେ ଯେଉଁ ଶିଳ୍ପାୟନ ହେବାକୁ ଯାଉଛି ତାହା ଓଡ଼ିଶାର ଲୋକଙ୍କର ଚାହିଦା ପାଇଁ ନୁହେଁ । ଓଡ଼ିଶାରେ ଆଜି ବି ୮୦ ଭାଗ ଲୋକ ଚାଷ, ଜଙ୍ଗଲ, ମାଛ ଧରିବା, ପଶୁପାଳନ ଓ ପାରଂପାରିକ ବୃତ୍ତି ଉପରେ ନିର୍ଭର କରୁଛନ୍ତି । ୨୦ ଭାଗ ଲୋକ ଶିଳ୍ପ ତଥା ସହରୀ ସେବାରେ ରହିଛନ୍ତି । ମାତ୍ର ୫ ଭାଗ ଲୋକ ବଡ଼ ଓ ମଧ୍ୟମ ଶିଳ୍ପ ଉପରେ ନିର୍ଭରଶୀଳ । ଗତ ୨୭ ବର୍ଷର ଶିଳ୍ପାୟନର ଏ ହେଲା ପରିଣତି ।

ଏବେ ଆସିବା ରୋଜଗାର କଥାକୁ । ବଡ଼ ଓ ମଧ୍ୟମ ଶିଳ୍ପ ଆଶାଜନକ ସଂଖ୍ୟାରେ ନିଯୁକ୍ତି ଓ ରୋଜଗାର ସୃଷ୍ଟିରେ ଅକ୍ଷମ ବୋଲି ଗଲା ୭୦ ବର୍ଷର ଅନୁଭବ ପ୍ରମାଣିତ କରିଛି । ଅଧିକାଂଶ ନିଯୁକ୍ତି ଓ ରୋଜଗାର ସୃଷ୍ଟି କରିଛି କ୍ଷୁଦ୍ର ଶିଳ୍ପ ଓ କୁଟୀର ଶିଳ୍ପ । ଆଉ ଗୋଟିଏ କଥା ସ୍ପଷ୍ଟ ହେଉଛି କୃଷିର ବିକାଶ ଦିଗରେ ଓ ଜଂଗଲକୁ ଯତ୍ନର ସହିତ ବ୍ୟବହାର କରିବା କ୍ଷେତ୍ରରେ ଆମର ସରକାର ଗୁଡ଼ିକ ଚରମ ଅବହେଳା କରିଆସିଛନ୍ତି । ଠିକ୍ ସେମିତି ପାରମ୍ପରିକ ବୃତ୍ତିର

ବିକାଶ ଲାଗି ଦୃଷ୍ଟି ଦେଇ ନାହାନ୍ତି । ଏ ସବୁ ହୋଇଥିଲେ କୃଷି ଓ ଜଂଗଲ ଭିତ୍ତିକ ଶିଳ୍ପ ବହୁଳ ସଂଖ୍ୟାରେ ପ୍ରତିଷ୍ଠା ହୋଇଥାନ୍ତା । ଗ୍ରାମାଂଚଳରେ ଶିଳ୍ପର ପ୍ରସାର ହୋଇଥାନ୍ତା । ଏ କଥା କହିବାକୁ ପଡ଼ିବ ନାହିଁ ଯେ ସେ ସବୁ କରା ନ ଯାଇ ଅବିଚାରିତ ଭାବରେ ଖଣି ଭିତ୍ତିକ ଶିଳ୍ପ ପ୍ରତିଷ୍ଠାର ଯେଉଁ ନିଶା ଓଡ଼ିଶା ସରକାରକୁ ଘାରିଛି, ତାହା ଦୁର୍ଭାଗ୍ୟଜନକ । ୭୦ ବର୍ଷ ଧରି ଓଡ଼ିଶାରେ ହୋଇଥିବା ହୋଇଥିବା ଶିଳ୍ପାୟନ ଲୋକଙ୍କର ଚାହିଦା ଓ ରୋଜଗାର ସୃଷ୍ଟିକୁ ଆଖି ଆଗରେ ରଖି କରାଯାଇ ନ ଥିଲା । ଏଣୁ ଭାରତରେ ଓଡ଼ିଶା ସବୁଠୁ ବେଶି ବେକାର ଓ ଦରିଦ୍ର ଲୋକଙ୍କ ରାଜ୍ୟ ଭାବରେ ଅପଖ୍ୟାତି ପାଇଛି । ମୋଟା ମୋଟି ଦେଖିବାକୁ ଗଲେ ଓଡ଼ିଶାରେ ଆଜି ପ୍ରର୍ଯ୍ୟନ୍ତ ହୋଇଥିବା ଶିଳ୍ପାୟନ, ଓଡ଼ିଶାର ଜନତାଙ୍କ ସ୍ୱାର୍ଥରେ ନ ହୋଇ ଦେଶୀ-ବିଦେଶୀ ପୁଂଜିପତି ଏବଂ ତାଙ୍କର ଦେଶୀ ଦଲାଲ (ନେତା,ଉଚ୍ଚ ପଦସ୍ଥ ଅଫିସର, ବଡ଼ ବ୍ୟବସାୟୀ ଓ ଠିକାଦାର) ମାନଙ୍କ ସ୍ୱାର୍ଥ ସାଧନ ପାଇଁ ହୋଇଛି ।

ଏ ଅନୁଭବରୁ ଆମେ ଓ ଆମ ସରକାର ତଥା ନେତୃବର୍ଗ କିଛି ଶିଖିଲେ କି ? କୃଷିର ବିକାଶ, ଜଂଗଲକୁ ଯତ୍ନର ବ୍ୟବହାର ପାଇଁ କିଛି କାମ ଆରମ୍ଭ କଲେ କି ? ପାରଂପରିକ ବୃତ୍ତିର ବିକାଶ ପାଇଁ କୌଣସି ଯୋଜନା ହାତକୁ ନେଇଛନ୍ତି କି ? କୃଷି, ଜଙ୍ଗଲ ଓ ପାରଂପାରିକ ବୃତ୍ତିର ବିକାଶ ଓ ସର୍ବୋପରିଭାବେ ଗାଁର ବିକାଶ କରି ତାର ଭିତ୍ତି ଉପରେ କ୍ଷୁଦ୍ର ଶିଳ୍ପ, କୁଟୀର ଶିଳ୍ପକୁ ଆଗ୍ରାଧିକାର ଦେବାକୁ ଅଣ୍ଟା ଭିଡ଼ିଛନ୍ତି କି ?

ଆମେ ଯଦି ପରବର୍ତ୍ତୀ ଅର୍ଥନୀତି ଓ ଅନୁରୂପ ବିକାଶ ନୀତି, ଶିଳ୍ପନୀତିକୁ ସମୀକ୍ଷା କରିବା ତେବେ ଜାଣିପାରିବା ଯେ ଆମ ଶାସକ ଶ୍ରେଣୀ ଦେଶ ଓ ଦଶର ପ୍ରତିନିଧିତ୍ୱ କରିବାକୁ ଚାହେଁନି । ଅତି ସଂପନ୍ନ ଶ୍ରେଣୀର ଯେଉଁ ପରିବାର ଗୁଡ଼ିକୁ ସେ ଗଲା ୪୦ ବର୍ଷର ଆର୍ଥିକ ନୀତି ଓ ବିକାଶ ପ୍ରକ୍ରିୟାରେ ତିଆରି କରିଛି ସେଇ ଶ୍ରେଣୀକୁ ହିଁ ପ୍ରତିନିଧିତ୍ୱ କରୁଛି ସରକାର । ଅତୀତର ଭୂଲରୁ ସେଇ ମଣିଷ ଶିଖେ, ଯିଏ ଭୁଲକୁ ସ୍ୱୀକାର କରି ସଂଶୋଧନ ବା ଭୁଲ ପାଇଁ ମୂଲ୍ୟ ଦେବାକୁ ଚାହେଁ । ନିଜ ଭୁଲ ପାଇଁ ଲୋକଙ୍କୁ ମୂଲ୍ୟ ଦେବାକୁ ବାଧ୍ୟ କରିବା ହେଲା ଆମ ଶାସକ ଶ୍ରେଣୀର ଚରିତ୍ର । ଏ ଯାଏଁ ଗାଈର ଶିଂଘ ଧରି, ଲାତ ଖାଇ ଶାସକ ଶ୍ରେଣୀକୁ କ୍ଷୀର ଖୁଆଉଥିବା, ଉତ୍ପାଦକ ଶ୍ରେଣୀକୁ ଦେଶପ୍ରେମ ନାଁରେ ସର୍ବସ୍ୱ ତ୍ୟାଗ କରିବା ପାଇଁ ବାଧ୍ୟ କରିବା ହେଲା ଆମ ଶାସକ ଶ୍ରେଣୀର ଉଦ୍ଦେଶ୍ୟ । ସମାଜବାଦର ଫମ୍ପା ସ୍ଲୋଗାନ ଭିତରେ ଚାଲିଥିବା ରାଷ୍ଟ୍ରସମର୍ଥିତ ପୁଂଜିବାଦକୁ ୧୯୯୦ ପରେ ସମାଜବାଦର ସ୍ଲୋଗାନ ବି ଦେବାକୁ ପଡ଼ିଲା ନାହିଁ । ସେ ତାର ଲୁଚେଇ ରଖି ନଖ, ଦାନ୍ତ, ଶୁଣ୍ଢ ମାନଙ୍କୁ ଜଗତୀକରଣ, ଉଦାରୀକରଣ, ଘରୋଇକରଣ ନାଁରେ ବାହାରକୁ ଦେଖାଇଦେଲା । ବଜାର ବା ବଜାରୀ ଶକ୍ତିକୁ ସରକାର

ନୁହେଁ ସରକାରକୁ ବଜାର ନିୟନ୍ତ୍ରଣ କଲା । ବଜାରୀ ଶକ୍ତିଙ୍କ ନିର୍ଦ୍ଦେଶରେ ଆରମ୍ଭ ହେଲା ଶାସନ । ପୁଂଜିବାଦ ଆଗ ଅପେକ୍ଷା ଅଧିକ ଆକ୍ରାମକ ସଂଗଠିତ ଓ ସଂପ୍ରସାରଣଶୀଳ ହେଲା । ଜୀବନର ଓ ପୃଥିବୀର ସମସ୍ତ ଅପହଂଚ ଇଲାକାକୁ ପୁଂଜି ପହଂଚିବା ପାଇଁ ଥିବା ସମସ୍ତ ବାଡ଼ ବତାକୁ ଭାଂଗି ଦିଆଗଲା । ଯେଉଁ ଯେଉଁ ଜାଗା, ଦିଗ, ଜିନିଷକୁ ଆମେ ବେପାର ବାହାରେ ରଖିଥିଲେ ସେ ସବୁବି ବେପାରର ପରିଧିକୁ ଆସିଗଲା । ଏଇ ପୁଂଜିବାଦୀ ପୁନଃଗଠନରେ ମୂଳ ଚରିତ୍ର ଉପରେ ସମ୍ୟକ ଚର୍ଚ୍ଚା କରିବା ।

**ନବେ ପରବର୍ତ୍ତୀ ଶିଳ୍ପନୀତି:** -୯୦ ପରବର୍ତ୍ତୀ ଅର୍ଥନୀତି ଅନୁରୂପ ହେଲା ଶିଳ୍ପନୀତି । ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଗୁଡ଼ିକ ହେଲା -୧. ନୀତିଗତ ଭାବେ ଘରୋଇ ଶିଳ୍ପକୁ ପ୍ରୋତ୍ସାହନ, ମୂଖ୍ୟତଃ ବହୁରାଷ୍ଟ୍ରିୟ କଂପାନୀ ମାନଙ୍କୁ ଅଗ୍ରାଧିକାର ନୁହେଁ ଗୋଟିଏ ରକମ ଏକାଧିକାର ଦେବାର ପ୍ରୟାସ । ୨. ପରିଚାଳନା ତ୍ରୁଟିକୁ ନ ସୁଧାରି ରାଷ୍ଟ୍ରାୟତ ଶିଳ୍ପକୁ ବନ୍ଦ କରିବା । ୩. ଶସ୍ତା ଦରରେ ରାଷ୍ଟ୍ରାୟତ ଶିଳ୍ପକୁ ଘରୋଇ ପୁଂଜିପତିଙ୍କୁ ଶସ୍ତାରେ ବିକିଦେବା । ୪. କେବଳ ବୃହତ୍ତ ଶିଳ୍ପ ମାନଙ୍କୁ ପ୍ରୋତ୍ସାହନ । ରାଷ୍ଟ୍ରାୟତ ଶିଳ୍ପର ଘରୋଇକରଣ । ୫. ଆନ୍ତର୍ଜାତୀୟ ବଜାରରେ ଚାହିଦା ପୁରଣ ଓ ବୈଦେଶିକ ପୁଂଜି ସଂଗ୍ରହ ପାଇଁ ଖଣିଜଶିଳ୍ପ ଗୁଡ଼ିକ ମୂଖ୍ୟତଃ ରପ୍ତାନୀ ଭିତ୍ତିକ କରିବା । ୬. ବିଦେଶୀ ତଥା ଅତ୍ୟାଧୁନିକ ଯନ୍ତ୍ରକୌଶଳ ଉପରେ ବେଶି ଗୁରୁତ୍ୱ । ଘରୋଇ କଂପାନୀ ମାନଙ୍କୁ ପ୍ରୋତ୍ସାହିତ କରବା ପାଇଁ ଶ୍ରମ ଆଇନ, ଶିଳ୍ପ ବିବାଦ ଆଇନରେ ପରିବର୍ତ୍ତନ । ଜମି ଲିଜ୍ ନୀତିକୁ କୋହଳ କରାଗଲା । ଜମି ଲିଜ୍‌ର ସୀମା ବଢ଼େଇ ଦିଆଗଲା । ୭. ସ୍ୱେଚ୍ଛାକୃତ ଅବସର ପାଇଁ ଶ୍ରମକଂକୁ ବାଧ କରିବା, ତା ସାଙ୍ଗକୁ ବିଦେଶୀ ପୁଂଜି ଓ ପ୍ରଯୁକ୍ତି ଆକର୍ଷିତ କରିବା ପାଇଁ ବା ଆର୍ଥିକ ଅଭିବୃଦ୍ଧି ପାଇଁ ଦେଶୀ ଓ ବିଦେଶୀ ଶିଳ୍ପପତିଙ୍କୁ ରିହାତି ଦେବାର ଅନିବାର୍ଯ୍ୟତା ସଂପର୍କରେ ସରକାର ଯୁକ୍ତି କରୁଛନ୍ତି । ତା ସହ ରାଜସ୍ୱ ଓ ରୋଜଗାର ସୃଷ୍ଟିର କଥା ଯୋଡ଼ା ଯାଉଛି । ଏଇଥି କହିବା ବାହୁଲ୍ୟ ହେବ ଯେ ନୂତନ ଅର୍ଥନୀତି ସ୍ୱାଭାବିକ ଭାବରେ ଶିଳ୍ପନୀତିକୁ ପ୍ରଭାବିତ କଲା । ୧୯୯୨ ପରଠୁ ଭିନ୍ନ ଭିନ୍ନ ସମୟରେ ପ୍ରଣୀତ ଶିଳ୍ପନୀତିରେ ଉଦାରୀକରଣ, ଘରୋଇକରଣର ପ୍ରଭାବ ଅଧିକ ବ୍ୟାପକ ହେଲା । ଓଡ଼ିଶା ବି ସେଇ ପଦାନୁସରଣ କରିଥିବା କଥା ୧୯୯୨,୧୯୯୬,୨୦୦୧ ର ଶିଳ୍ପନୀତିକୁ ସମୀକ୍ଷା କଲେ ଜାଣିପାରିବା । ସେଥିରେ କିଛି ପରିବର୍ତ୍ତନ ଆଣି ୨୦୦୪ ରେ ଏକ ଶିଳ୍ପନୀତି ଘୋଷିତ ହୋଇଛି । ଏହାର ମୂଳ ଲକ୍ଷ୍ୟ ହେଲା -

(୧) ପୁଂଜି ନିବେଶର ପଥ ସରଳ କରିବା (ଅନୁଚ୍ଛେଦ - ୨) (୨) ରାଜ୍ୟସରକାର ଘରୋଇ ଉଦ୍ୟମକୁ ପ୍ରତ୍ସୋହିତ କରିବେ ଓ ଘରୋଇ ପୁଂଜିନିବେଶକୁ ଆମନ୍ତ୍ରଣ କରିବେ ଏବଂ

ଓଡ଼ିଶାକୁ ପୁଂଜିନିବେଶ ପାଇଁ ଆକର୍ଷଣୀୟ କରି ଗଢ଼ିତୋଳିବେ (ଅନୁଛେଦ - ୨.୧) (୩) ଓଡ଼ିଶା ଉପକୂଳରେ ସ୍ୱତନ୍ତ୍ର ଅର୍ଥନୈତିକ ଅଂଚଳ ସୃଷ୍ଟି କରିବେ ଯାହା ରପ୍ତାନୀ ଯୋଗ୍ୟ ଉତ୍ପାଦନ ପାଇଁ ପ୍ରତ୍ୟକ୍ଷ ବିଦେଶୀ ପୁଂଜି ନିବେଶକୁ ଆକୃଷ୍ଟ କରିପାରିବ । (ଅନୁଛେଦ - ୮.୪) (୪) ଶିଳ୍ପରେ ଓ ଶିଳ୍ପପାଇଁ ଭିତ୍ତିଭୂମି ପ୍ରସ୍ତୁତିରେ ରାଜ୍ୟ ସରକାର ବିଦେଶୀପୁଂଜିକୁ ସ୍ୱାଗତ ଜଣାଇବେ (ଅନୁଛେଦ - ୧୧.୧) (୫) ବିଦେଶୀ ପୁଂଜି ବିଦେଶର ପଥ ସୁଗମ ପାଇଁ ରାଜ୍ୟରେ 'ବିଦେଶୀ ନିବେଶକ ମଂଚ' ତିଆରି ହେବ ଓ ନୂଆ ଦିଲ୍ଲୀରେ 'ଓଡ଼ିଶା ନିବେଶ କେନ୍ଦ୍ର' ପ୍ରତିଷ୍ଠା ହେବ । (୬) ଶିକ୍ଷା ନୀତିରେ ପରିବର୍ତ୍ତନ ଆଣି ଘରୋଇ ଉଦ୍ୟମରେ ନୂତନ ବୈଷୟିକ ପ୍ରତିଷ୍ଠାନ ଗୁଡ଼ିକରେ ସ୍ଥାପନା ହେବା । ଏ ସବୁର ସରଳ ନିଷ୍କର୍ଷ ହେଲା - କମ ପୁଂଜି ଖର୍ଚ୍ଚରେ ଅଧିକ ମୁନାଫା ପାଇଁ ଅବସର ଦେବ । ତା ମାନେ କମପଇସାରେ କଂଚାମାଲ, ଜମି ବା ଆନୁସାଙ୍ଗିକ ସୁବିଧା ନାମ ମାତ୍ର ବା ବିନା ମୂଲ୍ୟରେ ଯୋଗାଇଦେବା ଓ ସର୍ବାଧିକ ଟିକସ ରିହାତି ଦେବା ।

**ଶିଳ୍ପକୁ ରିହାତି :** (୧) ଜମି ଉପରେ ପ୍ରିମିୟମ ଦେବାକୁ ପଡ଼ିବ ନାହିଁ । (୨) ନୂତନ ଶିଳ୍ପକୁ ୧୦୦ କେଭିଏ ଲୋଡ ପର୍ଯ୍ୟନ୍ତ ବିଦ୍ୟୁତ ଶୁଳ୍କ ଛାଡ଼ । (୩) ନିଜସ୍ୱ ବିଦ୍ୟୁତ ଉତ୍ପାଦନ କରୁଥିବା 'ଶିଳ୍ପ' ବଳକା ବିଦ୍ୟୁତ ବିକ୍ରି କରିପାରିବେ । ସେଥିରେ ଶୁଳ୍କ ଦେବାକୁ ପଡ଼ିବ ନାହିଁ । (୪) ଶିଳ୍ପ ଗୁଡ଼ିକୁ ୪ ବର୍ଷଯାଏଁ ଜଳ ଖର୍ଚ୍ଚର ମାତ୍ର ୩୫ ରୁ ୫୦ ଶତକଡା ଦେବାକୁ ପଡ଼ିବ । (୫) ବୃହତ୍ତ ଶିଳ୍ପର ସଜ୍ଞାରେ ପରିବର୍ତ୍ତନ କରି ବୃହତ୍ତ ଶିଳ୍ପଙ୍କ ପାଇଁ କେନ୍ଦ୍ରିୟ ବିକ୍ରୀକର ୧୫ ବର୍ଷ ପର୍ଯ୍ୟନ୍ତ ଶତକଡ଼ା ୨ରୁ ଅଧିକ ହେବ ନାହିଁ । (୬) ବୃହତ୍ତ ଶିଳ୍ପମାନେ ବିଦେଶରୁ ଆମଦାନୀ କରୁଥିବା କଂଚାମାଲ ଉପରେ 'ପ୍ରବେଶ କର' ଲାଗିବ ନାହିଁ । (୭) ବୃହତ୍ତ ଶିଳ୍ପଗୁଡ଼ିକ ୧୦ ବର୍ଷପାଇଁ ୫୦% ଅଂଶ 'ବିକ୍ରି କର' ଛାଡ଼ ପାଇବେ । ତାହା ପୁଣି କର ଦେବା ବେଳେ ଫେରିପାଇବେ ।

ଏତିକିରେ ଶିଳ୍ପପତିମାନେ ସନ୍ତୁଷ୍ଟ ନୁହଁନ୍ତି । ସେ ଜିନ୍ଦଲ ହେଉକି ପସ୍କୋ ଅଧିକ ରିହାତି ମାଗୁଛନ୍ତି । ଅସଲରେ ଏହି ସବୁ କର ଓ ଶୁଳ୍କ ହିଁ ଗୋଟିଏ ରାଜ୍ୟର ଅସଲ ଆୟ ଓ ରାଜସ୍ୱ ସଂଗ୍ରହର ମାଧ୍ୟମ ହୁଅନ୍ତା । ସେତକ ଯଦି ଛାଡ଼ କରିଦିଆଯାଉଛି ତେବେ ରାଜ୍ୟ ପାଇବ କେତେ ବା କେଉଁ ସ୍ୱାର୍ଥରେ ଏତକ କରାଯାଇଛି । ଲାଗୁଛି ସତେ ଯେପରି ଆମ ରାଜ୍ୟ ପୃଥିବୀର ଯେ କୌଣସି ଧନୀ ରାଷ୍ଟ୍ରର ଅନ୍ୟତମ ଧନୀରାଜ୍ୟ । ସେ କଂପାନୀ ଗୁଡ଼ିକ ପ୍ରତି ଅତିମାତ୍ରାରେ ସଦୟ ହେଇ ଉଠୁଛି । ପ୍ରକୃତରେ କେତେ ପୁଂଜି ଆସୁଛି ଓ ରିହାତି ନାଁରେ କେତେ ଛାଡ଼ ମିଳୁଛି । ଏମିତିରେ ଦେଖିଲେ ବୃହତ ଶିଳ୍ପ ଗୁଡ଼ିକରେ ଲାଗୁଥିବା ଯନ୍ତ୍ର କୌଶଳ

ତଥା ଯନ୍ତ୍ର ପାଇଁ ସେମାନେ ଖଟାଉଥିବା ପୁଂଜି ମୋଟ ପୁଂଜିର ପାଖାପାଖି ୨୫-୩୦%, ସ୍ଥାନ ବିଶେଷରେ ୪୦ ଶତକଡ଼ା । ଅସଲରେ ଦେଖିବାକୁ ଗଲେ କ୍ଷତିପୂରଣ ଓ ଥଇଥାନ ପାଇଁ ହେଉଥିବା ଅର୍ଥକୁ ହିଁ ଆମେ ପୁଂଜିନିବେଶ ବୋଲି ଧରିନେଇଛୁଁ । ଯନ୍ତ୍ରକୌଶଳ ବା ଯନ୍ତ୍ରକୁ ସେମାନେ ନିଜ ଦେଶରୁ ବା ବିଦେଶରୁ ଆଣନ୍ତି ।

## ଲାଭ କାହାର ?

ଉପରୋକ୍ତ ରିହାତି ଯଦି ଦିଆଯାଏ ଏବଂ କଂପାନୀମାନେ ଦାବୀ କରୁଥିବା ଅଧିକ ରିହାତି ଭିତରୁ ଯଦି କିଛି ମାନି ନିଆଯାଏ ତେବେ କଥାଟି ହେବ ଏମିତି - ରିହାତି ନାଁରେ ସେମାନେ ୫ /୧୦ ବର୍ଷ ଭିତରେ ନିଜ ପୁଂଜିତକ ଫେରିପାଇବେ । ତାମାନେ ପାଖାପାଖି ବିନା ପୁଂଜିରେ ସେମାନେ ଆମର ସଂପଦତକ ଲୁଟ କରିନେବେ । ଗୋଟିଏ ଉଦାହରଣ ଯଥେଷ୍ଟ ହେବ ଜିନ୍ଦଲ ଖଟଉଛି ଟ.୫୦୦୦ କୋଟି । ଜିନ୍ଦଲର ଦାବୀ ଓ ରିହାତି ନୀତି ଅନୁସାରେ ଓ ତାର ଖଟେଇଥିବା ମୂଳ ପୁଂଜି ୫ ବର୍ଷ ଭିତରେ ଫେରି ପାଇବ । କାରଣ ସେ ପ୍ରତି ବର୍ଷ ରିହାତି ପାଇବ ୧୦୦୦ କୋଟି । ତା ପାଇଁ ୨୦ବର୍ଷର ରିହାତିକୁ 'ସୋନେପେ ସୁହାଗା' କହିବା ଠିକ୍ ହେବ । ୨୦ ବର୍ଷ ଯଦି ରିହାତି ପାଏ ଜିନ୍ଦଲ କଂପାନୀର ଲାଭ ହେବ ଶତକଡ଼ା ୩୦୦ । ସେଇ କଥା ଉତ୍କଳ ଆଲୁମିନା, କାଶୀପୁର, ଲାଂଜିଗଡ଼ର ବେଦାନ୍ତ, ପାରାଦ୍ୱୀପର ପୋସ୍କୋ ପ୍ରକଳ୍ପରେ ବି ଘଟିବାକୁ ଯାଉଛି । ଆମକୁ ନିର୍ବିଘ୍ନରେ ଲୁଟ । ଆମେ ଖୁବ୍ ଉଦାର । ଉଦାରୀକରଣର ଚରମ ସୀମା ଯାଏଁ ଆମେ ଯିବାକୁ ପ୍ରସ୍ତୁତ । ଲୁଟ୍ ପାଇଁ ଛୁଟ୍ ନୀତି ଅବଲମ୍ବନ କରିଥିବା ନବୀନ ସରକାରଙ୍କ ଏ ରକମ ନିମନ୍ତ୍ରଣକୁ କୋଉ ଶିଳ୍ପପତି ଅବା ଅସ୍ୱୀକାର କରିବ ? କେବଳ ସେତିକି ନୁହେଁ ଏଇ ଲୁଟ ପାଇଁ ଛୁଟ୍‌କୁ ଯେଉଁମାନେ ବିରୋଧ କରିବେ ସେମାନଙ୍କୁ ଦୃଢ଼ ହସ୍ତରେ ଦମନ କରିବେ ବୋଲି ମୁଖ୍ୟମନ୍ତ୍ରୀ ଓ ତାଙ୍କ ସହଯୋଗୀ ମନ୍ତ୍ରୀ ବିଶ୍ୱଭୂଷଣ ଘୋଷଣା କରିସାରିଛନ୍ତି । ଏ ପରିକି ଏଇ ଅବିଚାରିତ ଶିଳ୍ପାୟନକୁ ବିରୋଧ କରୁଥିବା ଲୋକଙ୍କ ସହ ଲଢ଼ିବା ପାଇଁ ବିଜୁ ସେନା/ନବୀନ ସେନା ଭଳି ବେସରକାରୀ ଗୁଣ୍ଡା ଦଳ ଗଠନ କରିଛନ୍ତି । କେବଳ ଘୋଷଣା କରିନାହାଁନ୍ତି କାଶୀପୁର, ଲାଂଜିଗଡ଼, କଳିଙ୍ଗନଗର, ଢେଙ୍କାନାଳର ଶିବ ପୁରରେ ଲୋକଙ୍କୁ ପୋଲିସ, ସିଆରପି.ଏଫ୍, ରିଜର୍ଭ ବାଟାଲିୟନ ମାଧ୍ୟମରେ ଅମାନୁଷିକ ଅତ୍ୟାଚାର କରି, ପୁଂଜିପତିଙ୍କ ପ୍ରତି ନିଜର ଆନୁଗତ୍ୟର ପରାକାଷ୍ଠା ଦେଖେଇସାରିଛନ୍ତି ।

ଲୁଟ୍ ପାଇଁ ଏଇ ଛୁଟ୍‌ର ଗମ୍ଭୀରତା ବୁଝିବା ପାଇଁ ଓଡ଼ିଶା ସରକାରଙ୍କ ଦଶମ ପଂଚ ବାର୍ଷିକ ଯୋଜନାକୁ ଆଖିପକାଇବା । ସମାଜ ସେବା ବା କଲ୍ୟାଣ କ୍ଷେତ୍ରରେ (ଶିକ୍ଷା, ଚିକିତ୍ସା ଓ ଜନ ସ୍ୱାସ୍ଥ୍ୟ ଜଳଯୋଗାଣ ଓ ପରିମଳ, ଗୃହ, ନଗର ଉନ୍ନୟନ, ସୂଚନା ଓ ପ୍ରଚାର, ଅନୁସୂଚିତ

ଜାତି, ଜନଜାତି ଓ ପଛୁଆବର୍ଗଙ୍କର କଲ୍ୟାଣ, ଶ୍ରମ ଓ ନିଯୁକ୍ତି, ସାମାଜିକ ନିରାପତ୍ତା ଓ କଲ୍ୟାଣ, ପୁଷ୍ଟି ) ରେ ଦଶମ ପଂଚବାର୍ଷିକ ଯୋଜନାରେ ମୋଟ ବ୍ୟୟ ଅଟକଳ ୫୫୮୯ କୋଟି ଟଙ୍କା ହେଇଥିବ । ଅର୍ଥାତ ୫୦୦୦ କୋଟି ଟଙ୍କାର ରିହାତି, ଗୋଟିଏ ପଂଚବାର୍ଷିକ ଯୋଜନାରେ 'ସମାଜସେବା କ୍ଷେତ୍ର'ରେ କୃତ ବ୍ୟୟ ଅଟକଳ ସହ ତୁଳନୀୟ । ଏଇ କେବଳ ଗୋଟିଏ କଂପାନୀ ର ରିହାତି କଥା । 'ସମାଜ ସେବା କ୍ଷେତ୍ର'ରେ ବ୍ୟୟ, ସମ୍ବଳ ଅଭାବରୁ ହୋଇପାରୁନାହିଁ ବୋଲି ଯେଉଁ ସରକାର କହୁଛି, ସେ ସେଇ ରିହାତି କାଟ କରି ତାକୁ ଜନକଲ୍ୟାଣରେ ଖର୍ଚ୍ଚ କଥା କହୁନାହିଁ କାହିଁକି ?

ପ୍ରସ୍ତାବିତ ସମସ୍ତ ପ୍ରକଳ୍ପ ଯଦି ସ୍ଥାପିତ ହୁଏ ତେବେ ସର୍ବମୋଟ ପୁଂଜି ବିନିଯୋଗର ପରିମାଣ ହେବ ୩ ଲକ୍ଷ କୋଟି । କଂପାନୀମାନେ ଦାବୀ କରୁଥିବା ରିହାତିକୁ ମାନିନେଲେ ରିହାତି ଦାବୀର ପରିମାଣ ବାର୍ଷିକ ୨୫୦୦୦ କୋଟି ହେବ । ୨୦ ବର୍ଷର ରିହାତି ଦାବୀକୁ ସରକାର ମାନିନେଲେ, ୧୫ ଲକ୍ଷ କୋଟି ଟଙ୍କାର ରାଜସ୍ୱ ସରକାର ହରାଇବେ । ଖଣି ରୟାଲିଟି ହାରରେ ସଂଶୋଧନ ନ ହେବା ଫଳରେ ହରାଉଥିବା ଶହ ଶହ କୋଟି ରାଜସ୍ୱର କଥା ବି ରହିଛି । କେବଳ କୋଇଲାରେ ୧୯୯୭-୨୦୦୦ ଭିତରେ ସରକାର ହରାଇଛନ୍ତି ୧୨୦୦ କୋଟି । ପରିବେଶରେ କ୍ଷତି, କି ବିସ୍ଥାପିତ ଜନ ସମୁଦାୟର ଜୀବନ ଜୀବିକାରୁ ଉଚ୍ଛେଦ ଓ ଗଚ୍ଛିତ ଖଣିଜ ଦ୍ରବ୍ୟର ଦ୍ରୁତ ହ୍ରାସ ଫଳରେ ଭବିଷ୍ୟତ ବଂଶଧରର ଯଥାର୍ଥ ହକ୍ ଉପରେ ଆସୁଥିବା ଆଘାତକୁ ବିଚାରକୁ ନିଆଗଲେ, ଆମେ ଜାଣି ପାରିବା ଆଜିର ଶିଳ୍ପାୟନ କାହା ସ୍ୱାର୍ଥରେ ?

ଏ ସବୁ କଥା କଣ ସରକାର ଜାଣେ ନାହିଁ ? ସାଧାରଣ ଲୋକ ଆଶ୍ଚର୍ଯ୍ୟ ହେଉଛନ୍ତି ଆମର ଶାସକ ଶ୍ରେଣୀ ଜାଣିଜାଣି ଏ ପାପ କାହିଁକି କରୁଛନ୍ତି ? ଏ ପ୍ରଶ୍ନର ଦିଟି ପକ୍ଷ ରହିଛି । ଗୋଟିଏ କଥା ହେଲା ଆମ ଦେଶ ଓ ରାଜ୍ୟ ଆଜି ଋଣର କବ୍ଜାରେ । ଏଠି କେବଳ ରାଜ୍ୟ କଥା ବିଚାରକୁ ନେବା । ୧୯୮୦-୮୧ ମସିହା ଆର୍ଥିକ ବର୍ଷ ଶେଷ ସୁଦ୍ଧା ଋଣର ପରିମାଣ ଥିଲା ୧୨୭୭.୦୫ କୋଟି ଟଙ୍କା । ୨୦୦୨-୦୩ ସୁଦ୍ଧା ହେଲା ୨୩,୭୩୩.୯୯ କୋଟି ଟଙ୍କା । ଉନ୍ନୟନ ମୂଳକ କାମ, କର୍ମଚାରୀ ମାନଙ୍କୁ ଦରମା ଦେବା ଓ ଋଣର ସୁଧ ପରିଶୋଧ ପାଇଁ ଆମକୁ ଋଣ କରିବାକୁ ପଡୁଛି । ଋଣ ପ୍ରଦାନକାରୀ ସଂସ୍ଥା - ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତୀୟ ମୁଦ୍ରା ପାଣ୍ଠି, ଡ଼ି, ଏଫ୍, ଆଇ, ଡ଼ି, ଏ.ଡ଼ି.ବି ଭଳି ଋଣ ପ୍ରଦାନ କାରୀ ସଂସ୍ଥା ମାନଙ୍କ ଦ୍ୱାରା ଆରୋପିତ ସର୍ତ୍ତ ହିଁ ଆଜି ଆମର ଅର୍ଥନୀତି । ସେ ସର୍ତ୍ତର ଅନୁରୂପ ଆମର ଶିଳ୍ପନୀତି, କୃଷିନୀତି ଓ କଥାକଥିତ ଜନକଲ୍ୟାଣର ଯୋଜନା ହେଉଛି । ସେମାନେ ପ୍ରଥମ ବିଶ୍ୱ ଓ ବିଶେଷକରି

କର୍ପୋରେଟ୍ ଶ୍ରେଣୀର ସ୍ୱାର୍ଥର ପ୍ରତିନିଧିତ୍ୱ କରନ୍ତି । ତାଙ୍କ ସ୍ୱାର୍ଥ ସୁହାଇଲାଭଳି ସର୍ତ୍ତ ରଖି ଋଣ ଦିଅନ୍ତି । ସେ ସର୍ତ୍ତ ଜନିତ ଚାପର ବଶବର୍ତ୍ତୀ ହୋଇ ବିଦେଶୀ ପୁଂଜି ନିବେଶର ବାଟ ପ୍ରସସ୍ତ କରାଯାଉଛି ଓ ଶିଳ୍ପପତିମାନଙ୍କୁ ଅବିଚାରିତ ଭାବେ ରିହାତି ପ୍ରଦାନ କରାଯାଉଛି । ଦ୍ୱିତୀୟ କାରଣ ହେଲା, ଶାସକ ଶ୍ରେଣୀର ଚାନ୍ଦା - ରାଜନୈତିକ, ସେ ଦଳଗତ, ବ୍ୟକ୍ତିଗତ ହେଉ କି ପରିବାରଗତ, ମୁଖ୍ୟ ଧାରାର ସବୁ ରାଜନୈତିକ ଦଳ, ଦଳୀୟ ନେତୃବୃନ୍ଦ ଓ ଅମଲାତନ୍ତ୍ରର ଉଚ୍ଚପଦସ୍ଥ ଅଫିସର ଆଜି କର୍ପୋରେଟ ଚାନ୍ଦାରେ ଆଧିନ ଓ ତାଂକ ଅନୁଗତ । ଏଥି ସହ ଯୋଡି ହୋଇଛି ବ୍ୟୟ ବହୁଳ ଭୋଟ ରାଜନୀତି ଓ ଉପଭୋକ୍ତବାଦୀ ସଂସ୍କୃତିର ମହନି ।

ଏଥିରୁ ମୁକ୍ତିର ବାଟ ସଂପର୍କରେ ଆଲୋଚନା ଖୁବ୍ ଲମ୍ୱା ହେବା କିନ୍ତୁ ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ଋଣର ସର୍ତ୍ତକୁ ଖିଲାପ କରାଯାଇପାରିବ, ଋଣ ପ୍ରଦାନକାରୀ ସଂସ୍ଥାମାନଙ୍କୁ ଚ୍ୟାଲେଂଜ କରି, ବିକଳ୍ପ ପୁଂଜିର ସନ୍ଧାନ ବି ସମ୍ଭବ ମାତ୍ର ଉପର ଲିଖିତ ଚରିତ୍ରର ଶାସକ ଶ୍ରେଣୀ ହାତରେ ଦେଶର ଲଗାମ ଥିବା ପର୍ଯ୍ୟନ୍ତ ଏସବୁ ସ୍ୱପ୍ନ ଦେଖିବା ଆକାଶ କଇଁଆ ସାଙ୍ଗେ ସମାନ । ଅସଲ କଥା ହେଲା ପରଜୀବି ଶୃଗାଳ ଶ୍ରେଣୀର ରାଜନୀତିରେ ପରିବର୍ତ୍ତନ ଆବଶ୍ୟକ । ରାଜନୈତିକ ସଂସ୍କୃତିର ପରିବର୍ତ୍ତନ ଜରୁରୀ । ଏ ସଂପର୍କରେ ଆଲୋଚନା ଆଉ କେବେ ।

**ଦ୍ରୁତ ଶିଳ୍ପାୟନର ରୂପ:** ନିକଟ ଭବିଷ୍ୟତରେ ୩ ଲକ୍ଷ କୋଟି ଟଙ୍କାରୁ ଅଧିକ ପୁଂଜି ନିବେଶ ହେବାକୁ ଯାଉଛି ।

| | |
|---|---|
| ବକ୍ସାଇଟରେ | ୫୩ ହଜାର କୋଟି |
| ଇସ୍ପାତ ଓ ଲୁହାରେ | ୬୫ ହଜାର କୋଟି |
| ଷ୍ଟିଲ ଓ ସ୍ପଞ୍ଜ ଆଇରନରେ | ୭୫ ହଜାର କୋଟି |
| ବିଦ୍ୟୁତରେ | ୬୨ ହଜାର କୋଟି |
| ବନ୍ଦର | ୧୮ ହଜାର |
| ରେଳପଥ, ଉପକୂଳ, ରାଜପଥ କେ.ବି.କେ. ରାସ୍ତା | ୩୬ ହଜାର |
| ପେଟ୍ରୋଲିୟମ | ୨୦ ହଜାର |

ଅନ୍ୟଦିଗରେ ଓଡ଼ିଶାକୁ ସରକାରଙ୍କ ବିଜ୍ଞପ୍ତି ଅନୁସାରେ (ପାଂଚଟି ନଦୀ ବନ୍ଧ, ପାଂଚଟି ଖଣିଜ ଶିଳ୍ପ) ପ୍ରକଳ୍ପ ଯୋଗୁଁ ଆଗାମୀ ୧୦ ବର୍ଷରେ ୨.୫ ଲକ୍ଷ ଲୋକ ବିସ୍ଥାପିତ ହେବେ । ଏକ ବେସରକାରୀ ହିସାବ ଅନୁଯାୟୀ ଏଇ ସଂଖ୍ୟା ୧୦ ଲକ୍ଷ ହେବ ।

## ରୋଜଗାର

| କେଉଁ ଶିଳ୍ପରେ | ପୁଜି (କୋଟିରେ) | ରୋଜଗାର ସୃଷ୍ଟିର ସମ୍ଭାବନା |
|---|---|---|
| ଆଲୁମିନା | ୫୩୦୦୦ | ୧୩୦୦୦ ~~କୋଟି~~ ଜଣ |
| ଷ୍ଟିଲ | ୭୫୦୦୦ | ୭୫୦୦୦ ~~କୋଟି~~ " |
| ପେଟ୍ରୋଲିୟମ | ୮୪୦୦୦ | ୪୨୦୦୦ " |
| ବିଜୁଳି, ବନ୍ଦର | ~~କୋଟି~~ | ~~୪୨୦୦୦~~ |

**ବିଶେଷ ଦ୍ରଷ୍ଟବ୍ୟ:** * କାଶୀପୁର ଦଶମନ୍ତପୁର, ଲକ୍ଷ୍ମୀପୁରରେ ହେବାକୁ ଯାଉଥିବା ଆଲୁମିନା ପ୍ରକଳ୍ପରେ ପ୍ରତି ୪ କୋଟି ପୁଂଜିରେ ଗୋଟିଏ ନିଯୁକ୍ତି ସୃଷ୍ଟି ହେବ । ସେ ପୁଣି ୨୫ ରୁ ୩୦ ବର୍ଷ ପାଇଁ ଏଥିରେ ୨୦୦୦ ଚାକରୀ ସୃଷ୍ଟି ହେଉଥିବା ବେଳେ ୫୦,୦୦୦ ପରିବାର ଜୀବିକା ହରାଇବେ । * ଷ୍ଟିଲ କ୍ଷେତ୍ରରେ ୧୪ କୋଟି ପୁଂଜିରେ ମାତ୍ର ଗୋଟିଏ ନିଯୁକ୍ତି ସୃଷ୍ଟି ହେବ । * ଏ ଯାବତ ୭୦ ବର୍ଷରେ ଓଡ଼ିଶାରେ ମୋଟ ୩୦୦୦୦ କୋଟି ଟଙ୍କା ଶିଳ୍ପାୟନରେ ଖଟା ହେଉଛି ଏବଂ ୩୨ ଲକ୍ଷ ୯୩ ହଜାର ନିଯୁକ୍ତି ପାଇଛନ୍ତି । ଏଥରକ ୨.୫ ଲକ୍ଷ କୋଟି ପୁଂଜିରେ ଦେଢ଼ ଲକ୍ଷ ଲୋକ ନିଯୁକ୍ତି ପାଇବେ । ଏଇଥିରୁ ଆମେ ଜାଣିପାରିବା ଯେ 'ବୃହତ ପ୍ରକଳ୍ପ' ଏବଂ 'ଆଜିର ଯନ୍ତ୍ରକୌଶଳ'ର ରୋଜଗାର ସୃଷ୍ଟି କ୍ଷମତା କେତେ ସଙ୍କୁଚିତ । * ଲାଂଜିଗଡ଼ରେ ବେଦାନ୍ତ ପ୍ରକଳ୍ପରେ ୫୦୦୦ କୋଟି ପୁଂଜି ଖଟାଯାଉଥିବା ବେଳେ ମାତ୍ର ୨୫୦ ଲୋକ ୨୫ ରୁ ୩୦ ବର୍ଷ ପାଇଁ ନିଯୁକ୍ତି ପାଉଛନ୍ତି । ୧୦,୦୦୦ ଲୋକଙ୍କ ଜୀବିକା ପ୍ରତକ୍ଷ୍ୟ ଭାବରେ ଓ ୧୫ ହଜାର ଲୋକଙ୍କ ଜୀବିକା ପରୋକ୍ଷ ଭାବରେ କ୍ଷତିଗ୍ରସ୍ତ ହେଉଛି । ଲକ୍ଷାଧିକ ଲୋକ ଜଳାଭାବର ଶିକାର ହେବେ ।

* ଗତ ୭୦ ବର୍ଷରେ ମାତ୍ର ୧୫୦୦ କୋଟି ଟଙ୍କା କ୍ଷୁଦ୍ର ଓ ୬ ଶହ କୋଟି ଟଙ୍କା କୁଟୀର ଶିଳ୍ପରେ ଖଟେଇ ୨୬ ଲକ୍ଷ ଟଙ୍କା ଖଟାଇ ୪ ଲକ୍ଷ ୩୦ ହଜାର ରୋଜଗାର ସୃଷ୍ଟି ହୋଇ ପାରିଥିଲା । * ଓଡ଼ିଶାରେ ୨୦ ଲକ୍ଷ ଶିକ୍ଷିତ ବେକାର ଅଛନ୍ତି । ଅନ୍ୟାନ୍ୟ ବେକାରଙ୍କୁ ହିସାବକୁ ନେଲେ ୪୦ ଲକ୍ଷ ଲୋକ ସ୍ଥାୟୀ ରୋଜଗାର ଖୋଜୁଛନ୍ତି ବୋଲି କହିବାକୁ ହେବ ।

| କ୍ଷେତ୍ର | ପୁଞ୍ଜିନିବେଶ (କୋଟିରେ) | ହାର | ରୋଜଗାର ସୃଷ୍ଟି |
|---|---|---|---|
| ଖଣି | ୫୦୦ | ୨.୭୩ | ୩ ହଜାର |
| ମଧ୍ୟମ ଓ ବୃହତ ଶିଳ୍ପ | ୫୦୦ | ୪୦ | ୨୦,୦୦୦ |
| କ୍ଷୁଦ୍ର ଶିଳ୍ପ | ୫୦୦ | ୨୮୧ | ୧,୪୧,୦୦୦ |
| କୁଟୀର ଶିଳ୍ପ | ୨୨୫୦ | ୪୪୭୫ | ୧ କୋଟି ୬୫ ହଜାର |
| କୃଷି | ୧୦୦୦ | ୧୬୫ | ୧ ଲକ୍ଷ ୬୫ ହଜାର |
| ଜଙ୍ଗଲ ଓ ପଶୁପାଳନ | ୨୫୦ | ୧୬୫ | ୪୧ ହଜାର |
| ସର୍ବମୋଟ | ୫୦୦୦ | | ୧ କୋଟି ୪ ଲକ୍ଷ ୪୧ ହଜାର |

* ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରି କ୍ଷୁଦ୍ର ଓ କୁଟୀର ଶିଳ୍ପ କ୍ଷେତ୍ରରେ ୫୦୦୦ କୋଟି ଟଙ୍କର ପୁଂଜି ଲଗାଣ କଲେ ୧ କୋଟିରୁ ଅଧିକ ଲୋକଙ୍କୁ କର୍ମ ନିଯୁକ୍ତି ଦେଇହେବ । ଏ ସଂବଧରେ ରାଜେନ୍ଦ୍ର ଷଡ଼ଙ୍ଗୀଙ୍କର ଲିଖିତ ଓଡିଶାରେ ଶିଳ୍ପାୟନ: ବେରୋଜଗାରୀ, ସମୁଦ୍ରକୁ ଶଙ୍ଖେ ରୋଜଗାର (ବିକଳ୍ପ ବିଚାର) ଲେଖାରେ ରୋଜଗାର ପରିପ୍ରେକ୍ଷୀରେ ଶିଳ୍ପାୟନ ପାଇଁ ଲୋକ ନୀତିର ସ୍ୱରୂପ ପେସ କରିଛନ୍ତି ।

ସଂଖ୍ୟା-୨୯

ଲୋକ ହିତକର ନୀତି ନାଁରେ କେବଳ ପୁଁଜି ଖଟେଇ ଦେଲେ ରୋଜଗାର ସୃଷ୍ଟି ହୋଇଯିବ ନାହିଁ । ସବୁ ବର୍ଗର ସବୁ ଲୋକଙ୍କ ସୀମିତ ସଂପନ୍ନତା ଚାହୁଁଛୁ  ନା ମୁଷ୍ଟିମେୟ ଲୋକଙ୍କ ଭୋଗ ବିଳାସ ପାଇଁ ବାକି ସମୂହଙ୍କ ପେଟରେ ଲାତ ଓ ପ୍ରକୃତି ଉପରେ ଚୋଟ ସେ ହେଲା ଅସଲ ପ୍ରଶ୍ନ ।

**ସଂଘର୍ଷ ହିଁ ବିକଳ୍ପ:** ତାହେଲେ କଣ କରାଯିବ ? ଏ ପ୍ରଶଗ୍ନ ଉତ୍ତର ହେଲା – ଏ ରକମର ଯନ୍ତ୍ରାୟନ କୁ ବିରୋଧ କରିବାକୁ ହେବ । ଏ ବିରୋଧ ଆରମ୍ଭ ହେଇସାରିଛି । ସେ କାଶୀପୁର, ଲାଂଜିଗଡ଼ରେ ହେଉ କି ପାରାଦ୍ୱୀପରେ ।  ସେ ଯାଜପୁରର କଳିଙ୍ଗନଗରରେ ହେଉକି ଝାରସୁଗଡ଼ାର ବମାଲୋଇ । କୋଉଠି ଆଦିବାସୀ ତ କୋଉଠି ଚାଷୀ ଏବଂ ବିଶେଷ ଭାବରେ ମହିଳାମାନେ ଏ ପ୍ରକଳ୍ପ ସବୁକୁ ଘୋର ବିରୋଧ କରୁଛନ୍ତି । କିନ୍ତୁ ଏହି ଆନ୍ଦୋଳନ ଗୁଡ଼ିକ ରାଷ୍ଟ୍ରର ହିଂସା, କର୍ପୋରେଟ୍‌ର ପୁଞ୍ଜିକୁ ଏକା ଏକା ସାମ୍ନା କରିପାରିବେ ନାହିଁ । କାରଣ ରାଷ୍ଟ୍ର ତାର ମାନବୀୟ ମୁଖାକୁ ଖୋଲିଦେଇ ସାରିଛି । ରାଷ୍ଟ୍ରନାମକ ଅନୁଷ୍ଠାନର ପ୍ରତିଟି ଅଙ୍ଗକୁ ସମ୍ଭାଳୁଥିବା ଲୋକମାନେ ଲୋକଲଜ୍ଜା ଛାଡ଼ି ସାରିଛନ୍ତି । କର୍ପୋରେଟ୍ ପୁଞ୍ଜିର ମହନି ସାଂଗକୁ ଆଜିର ଉପଭୋଗର ସଂସ୍କୃତି, ଯାହା ସିନେମା, ଦୂରଦର୍ଶନ ପରଦାରେ ଓ ଅନ୍ୟ ପ୍ରିଣ୍ଟ ଗଣମାଧ୍ୟମର ପୃଷ୍ଠାରେ ଏମିତି ପରସା ଯାଉଛି ଯେ ଏକଦା ଅନ୍ୟାୟ, ଅନୀତି, ଅତ୍ୟାଚାର ବିରୋଧରେ ଜନମତ ତିଆରିର ପ୍ରମୁଖ ଭୂମିକା ନେଉଥିବା ମଧ୍ୟବିତ୍ତ, ନମ୍ନ ମଧ୍ୟବିତ୍ତ ଓ ବୁଦ୍ଧିଜୀବି ଶ୍ରେଣୀ ଆଜି ଅସହାୟ ଉପଭୋକ୍ତା ହେବାର ସୁଖରେ, ଦେଶର ବାକି ସମସ୍ୟା ଓ ବାକି ଲୋକଙ୍କ ଦୁଃଖ ପ୍ରତି ଉଦାସୀନ ହେଇ ରହୁଛି । ପ୍ରମୁଖ ରାଜନୈତିକ ଦଳ, ତଥା ସମାଜ ଓ ଦେଶର ନେତୃତ୍ୱ ନେଉଥିବା ବର୍ଗ ଏବଂ ଅନୁଷ୍ଠାନ ଗୁଡ଼ିକ ଏକା ସାଙ୍ଗରେ ଜନବିରୋଧୀ ହୋଇଯିବା ଓ ଜନରୁ ବିଚ୍ଛିନ୍ନ ହୋଇଯାଇଥିବା ହେତୁ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଇଛି,  ତାକୁ ପୂରଣ କଲା ଭଳି ବିକଳ୍ପ ସାମାଜିକ-ରାଜନୈତିକ  ଶକ୍ତିର ନିର୍ମାଣ ଏ  ଯାଏଁ ହୋଇପାରି ନାହିଁ । ଲୋକେ ନିଜ ନିଜ ଜାଗାରେ ବୀରତ୍ୱର ସହ ଲଢୁଛନ୍ତି ନିଶ୍ଚୟ । କେବଳ ଲଢୁଛନ୍ତି କହିଲେ ଭୁଲ ହେବ, ପ୍ରଚଳିତ ବ୍ୟବସ୍ଥା ବିକାଶନୀତି ଉପରେ ପ୍ରଶ୍ନ ଚିହ୍ନ ଲଗେଇବାରେ ସକ୍ଷମ ହେଉଛନ୍ତି ।

ସଂପଦର ସୀମିତତା, ଆଗାମୀ ପିଢ଼ୀ ପ୍ରତି, ଭବିଷ୍ୟତର ସୁରକ୍ଷିତ ପୃଥିବୀ ପ୍ରତି ପ୍ରତିବଦ୍ଧତା ଜଣେଇଛନ୍ତି । ନର୍ମଦା ଆନ୍ଦୋଳନ ପ୍ରଚଳିତ ବିକାଶରେ କଳା ଦିଗକୁ ଆମ ସାମ୍ନାରେ ଥୋଇବାରେ ସଫଳ ହେଇଛି । କାଶୀପୁର ଜନ ଆନ୍ଦୋଳନ ପ୍ରଶ୍ନ କରୁଛି- କେତେ କାର, ଉଡ଼ାଜାହାଜ ଦରକାର ? ଗୋଟିଏ ପୁଞ୍ଜି ପତି ପାଇଁ କେତେ ପୁଞ୍ଜି ଦରକାର ? ତଥା କଥିତ ସମୃଦ୍ଧିର ସୀମା ସ୍ଥିର ହେଉ ବୋଲି ସେ ନିଜ ଭାଷାରେ କହୁଛି । ଏ ସବୁ ଆନ୍ଦୋଳନ ଯୋଗୁଁ ଜଗତିକରଣ, ଘରୋଇକରଣ ଓ ଉଦାରୀକରଣ ନାଁ ରେ ଚାଲୁଥିବା  ସଂସ୍କାରର ଭୟାବହତା

ପଦାରେ ପଡ଼ିଯାଇଛି । ଆନ୍ଦୋଳନର ତୀବ୍ରତାରେ ଭୟଭୀତ ସରକାରର ଅତ୍ୟାଚାରରୁ ତଥାକଥିତ ଜନ ମଙ୍ଗଳ ରାଷ୍ଟ୍ରରେ ହିଂସ୍ରକ ଚରିତ୍ର ଆଜି ପଦାରେ ପଡ଼ିଯାଇଛି । ଜଗତୀକରଣର ଅର୍ଥନୀତି- ସବୁ ବର୍ଗର ଲୋକଙ୍କ କଥା ଛାଡ ଦେଶର ୯୦ ଭାଗ ଲୋକଙ୍କୁ ନ୍ୟାୟ ଦେଇ ପାରିବ ନାହିଁ କି ଦେବାକୁ ଚାହେଁ ନାହିଁ, ତାହା ଆନ୍ଦୋଳନକାରୀଙ୍କ ପ୍ରତି ତାର ବ୍ୟବହାରରୁ ସ୍ପଷ୍ଟ ହେଉଛି । କର୍ପୋରେଟ ପୁଞ୍ଜି, ରାଷ୍ଟ୍ରର ଦମନକାରୀ ଏଜେନ୍ସି-ପୋଲିସ, ମିଲିଟାରୀ, ଏପରିକି ବହୁ କ୍ଷେତ୍ରରେ ବିଚାର ବିଭାଗ ଆନ୍ଦୋଳନ ଦମନ କରିବାରେ ଭୂମିକା ନେଉଛି । ଆମ ସମୟର ଦୁର୍ଭାଗ୍ୟ ହେଲା ଆଧୁନକ ଯନ୍ତ୍ର କୌଶଳରେ ପ୍ରତିଷ୍ଠିତ ଶିଳ୍ପ ଏବଂ ସେ ଶିଳ୍ପ ପାଇଁ ହେଉଥିବା ପ୍ରାକୃତିକ ସଂପଦର ଲୁଣ୍ଠନ, ଦେଶର ଚାଷ ବ୍ୟବସ୍ଥାର ଅବହେଳା ଓ ଉଭୟ ସଂଗଠିତ ତଥା ଅସଂଗଠିତ ଶ୍ରମିକ ମାନଙ୍କର ହେଉଥିବା କ୍ଷତିକୁ ନେଇ ଭାରତର ଅନେକ ବାମପନ୍ଥୀଦଳ ବେଶ ଦ୍ୱନ୍ଦରେ । ତୃତୀୟ ବିଶ୍ୱରେ ବଢୁଥିବା ବେରୋଜଗାରୀ, ବିସ୍ଥାପନ, ଏବଂ ଆର୍ଥିକ ଦୁର୍ଗତିର ଚର୍ଚ୍ଚା ହେଉଥିବା ସତ୍ତ୍ୱେ ବାମପନ୍ଥୀମାନେ ଅତ୍ୟାଧୁନିକ ଯନ୍ତ୍ର କୌଶଳର ପ୍ରକଳ୍ପ ସ୍ଥାପନା ସହ ସାମାଜିକ ବୈଷମ୍ୟ ଓ ସାମନ୍ତବାଦୀ ବ୍ୟବସ୍ଥାର ପରିବର୍ତ୍ତନ ସମ୍ଭବ ବୋଲି ଭାବିବା ଦୁର୍ଭାଗ୍ୟ ଜନକ ମନେହୁଏ । ମୂଖ୍ୟଧାରା ବାମପନ୍ଥୀ ଦଳଙ୍କ ବାହାରେଥିବା ବାମପନ୍ଥୀମାନେ ଉପର ବିଷୟ ଗୁଡ଼ିକ ଉପରେ ଏକ ସ୍ପଷ୍ଟ ମତ ତିଆରିରେ ଲାଗିଛନ୍ତି । ସେମାନଙ୍କ ଶକ୍ତି ବି ଅବଶ୍ୟ ଅଳ୍ପ କେତୋଟି ଅଂଚଳରେ ସୀମିତ ହୋଇ ରହିଛି । ଏଇ ଦଳ ମାନଙ୍କ ସହ ଆନ୍ଦୋଳନକାରୀ ଜନ ସଙ୍ଗଠନ ଗୁଡ଼ିକର କ୍ରମାଗତ ସଂପର୍କ, ସଂବାଦ ଓ ସମନ୍ୱୟରୁ ନୂତନ ଶକ୍ତି ନିର୍ମାଣର ସ୍ୱପ୍ନ ଓ ସମ୍ଭାବନା ରହିଛି ନିଶ୍ଚୟ । ଅବଶ୍ୟ ପ୍ରକଳ୍ପ ବିରୋଧୀ ଆନ୍ଦୋଳନ ଗୁଡ଼ିକର ସର୍ବଦଳୀୟ ଚରିତ୍ର ଅନ୍ୟଅର୍ଥରେ ଅଣରାଜନୈତିକ ଚରିତ୍ର କେତେବେଳେ, କେମିତି ଶକ୍ତି ମନେ ହେଉଥିବା ବେଳେ ଲଢ଼େଇର ଗୋଟିଏ ପର୍ଯ୍ୟାୟରେ ତାହା ତାର ଦୁର୍ବଳତା ବୋଲି ମନେ ହେଉଛି । ସଠିକ ଅର୍ଥରେ କହିଲେ ସେଥିରୁ ଏକ ଶ୍ରେଣୀ ସଂଘର୍ଷର ରାଜନୀତି ବା ଠୋସ୍ ବିକଳ୍ପ ରାଜନୀତିକ ଶକ୍ତି ନିର୍ମାଣ ଏ ଯାଏ ସମ୍ଭବ ହୋଇ ନାହିଁ ।

**ବିକଳ୍ପ ଶକ୍ତିର ନିର୍ମାଣ:** ସେ ଯା ହେଉ କିଛି ବାମପନ୍ଥୀ, ସମାଜବାଦୀ ଦଳ, ଗୋଷ୍ଠୀ, ବୁଦ୍ଧିଜୀବି, ମାନବାଧିକାର କର୍ମୀ, ବିକଳ୍ପ ଗଣମାଧ୍ୟମର ଏକ ଧାରା ତିଆରିର ଚେଷ୍ଟାରେ ଥିବା କ୍ଷୁଦ୍ର ଓ ଅନିୟମିତ ଖବରକାଗଜ, ପତ୍ର ପତ୍ରିକା ଏବଂ ଜନଆନ୍ଦୋଳନକାରୀ ସଂଗଠନ ଗୁଡ଼ିକ ଭିତରେ ସଂପର୍କ, ସଂବାଦ ଓ ସମନ୍ୱୟ ଚାଲୁ । ଏ ଦିଗରେ ସି.ପି.ଆଇ.ଏମ.ଏଲ, ଲିବରେସନ, ଏମ.ଏଲ.ନ୍ୟୁ ଡେମୋକ୍ରେସି, ସମାଜବାଦୀ ଜନ ପରିଷଦ ପରି ଦଳ, ଏନ.ଏ.ପିଏମ ଓ ପି.ଡି.ଏଫ.ଆଇ ଭଳି ରାଷ୍ଟ୍ରିୟ ସମନ୍ୱୟ ତଥା ଜନ ଆନ୍ଦୋଳନକାରୀ ଗୁଡିକର ସମ୍ବାଦ ଆରମ୍ଭ ହୋଇଛି ସତ ମାତ୍ର ଏକ ସୁସ୍ଥ ସ୍ଥାୟୀ, ଗଣତାନ୍ତ୍ରିକ ବାର୍ତ୍ତାଳାପ ଓ ସମନ୍ୱୟ ସମ୍ଭବ ହୋଇ

ପାରିନାହିଁ । ଆଜିର ଶିଳ୍ପାୟନ ଜନିତ ଲୁଟ ଓ ଶୋଷଣକୁ ନେଇ ସ୍ପଷ୍ଟ ବିଚାର ନ ଥିବା ସତ୍ତ୍ୱେ କେତୋଟି ପ୍ରକଳ୍ପକୁ ସି.ପି.ଆଇ. ଓ ସି.ପି.ଏମ ମଧ୍ୟ ବିରୋଧ କରୁଛନ୍ତି, ତାହା ଆଶ୍ୱାସନାର କଥା । ଛତିଶଗଡ ଓ ଓଡିଶାର ଆଲୁମିନା ପ୍ରକଳ୍ପ ସବୁକୁ ବିରୋଧ ପାଇଁ ଉଭୟ ରାଜ୍ୟର ସି.ପି.ଏମ ନେତୃତ୍ୱ ଜାତୀୟ ଦଳର ସ୍ୱୀକୃତି ଚାହିଁଛନ୍ତି । ଠିକ୍ ସେମିତି ସି.ପି.ଆଇ. ଓଡିଶାରେ ପୋସ୍କୋକୁ ଏବଂ ହିରାକୁଦ ଜଳଭଣ୍ଡାରରୁ ଶିଳ୍ପକୁ ପାଣିଦେବା କଥାର ପ୍ରତିବାଦ ପାଇଁ ନିଷ୍ପତି ନେଇଛି । ଆଶା କରାଯାଇ ପାରେ ଯେ, ଆଗାମୀ ଦିନରେ ସେମାନେ ଏକ ସ୍ପଷ୍ଟ ବିଚାର ସହ ଏଇ ସାମ୍ରାଜ୍ୟବାଦୀ ଲୁଟକୁ ସମ୍ପୂର୍ଣ୍ଣ ରୂପେ ବିରୋଧ କରିବେ । ଏ ସବୁ ଦଳ ଓ ଗୋଷ୍ଠି ଗୁଡିକ ଭିତରେ କିଛି ସହମତିର ବିନ୍ଦୁ କୁ ନେଇ ଏକ ମିଳିତ ଲଢ଼େଇବିନା ଏ ସାମ୍ରାଜ୍ୟବାଦୀ ଶକ୍ତିକୁ ଟକ୍‌ର ଦେଇ ହେବ ନାହିଁ ।

ଅବଶ୍ୟ ଏଇ ସଂପର୍କ, ସଂବାଦ ଓ ସମନ୍ୱୟ ଢ଼ିଲାଢ଼ିଲା ତ ନିଶ୍ଚୟ ହେବ କିନ୍ତୁ କେତୋଟି ପ୍ରମୁଖ ବିନ୍ଦୁକୁ ଆଖି ସାମ୍ନାରେ ରଖି ସହମତିର ରାଜନୀତି ଆଡ଼କୁ ଯିବାର ଚେଷ୍ଟା ନିହିତ ନ ରହିଲେ ମୁକ୍ତ ରାଜନୈତିକ କର୍ମୀର ରୋମାଣ୍ଟିକ ଓ ଅସ୍ଥିର ନିଷ୍ଠାରେ ଥିବା ଅସଚେତନ ପଳାୟନର ଧାରା ଜାରି ରହିବ । ଶତ୍ରୁ ଓ ବିପଦକୁ ସାମ୍ନା ପରିପ୍ରେକ୍ଷୀରେ ସମନ୍ୱୟର ବ୍ୟାକୁଳତା ଅପେକ୍ଷା ନିଜ ନିଜ ଅସ୍ମିତାକୁ ଜାବୁଡ଼ି ଧରିବା ଉଗୁଣ ମାନସିକତା ସମନ୍ୱୟର ଦିଗରେ ବାଧା ହୋଇ ଛିଡା ହେଇଛି । ପରିବର୍ତ୍ତନକାମୀ ଶକ୍ତି ଓ ତତ୍ତ୍ୱ ଗୁଡିକୁ ନିଜ ନିଜ ଅସ୍ମିତା, ଝଣ୍ଡା, ବେନର ଓ ଅହଂକାରକୁ ସାବ୍ୟସ୍ତ କରିବାର ଅନ୍ଧ ପ୍ରବଣତା ଛାଡିବାକୁ ହେବ । କିଛି ଦଳ ଓ ଗୋଷ୍ଠି ହିଂସାର ବନ୍ଧ ସଂସ୍କାରକୁ ଜାବୁଡି ଧରିଥିବା ବେଳେ ଆଉ ଦଳେ ସଂଘର୍ଷର ଆରମ୍ଭରୁ ଅହିଂସାର ବନ୍ଧ ସଂସ୍କାରକୁ । ହିଂସା ହେଉ କି ଅହିଂସା, ଗଣ ସଂଗଠନ, ଗଣଭିତ୍ତି ଓ ଗଣ ଅଂଶ ଗ୍ରହଣ ବିନା ଏ ଲଢ଼େଇକୁ ଜିତି ହେବ ନାହିଁ । ହିଂସା ର ବନ୍ଧ ସଂସ୍କାର ଗଣ ଭିତ୍ତି ଓ ଗଣ ଅଂଶ ଗ୍ରହଣର ରାସ୍ତାରେ ବାଧକ ନ ହେଉ । ଠିକ୍ ସେମିତି ଅହିଂସାର ବନ୍ଧ ସଂସ୍କାର ଆମକୁ ପଳାୟନପନ୍ଥୀ ନ କରୁ । ଏ ନେଇ ଦଳ ଓ ସଂଗଠନ ଗୁଡିକ ଭିତରେ ଖୋଲାଖୋଲି ଆଲୋଚନା ହେଉ । ଆଜିର ଏ ଘଡି ସନ୍ଧି ମୂହୁର୍ତ୍ତରେ ସମସ୍ତ ପ୍ରଗତିଶୀଳ, ଗଣତାନ୍ତ୍ରିକ, ବିପ୍ଳବୀ ବ୍ୟକ୍ତି, ସଂଗଠନ ଓ ଅନୁଷ୍ଠାନ ମାନଙ୍କୁ ମିଳିମିଶି, କେବଳ ନିର୍ଦ୍ଦିଷ୍ଟ କେତୋଟି ପ୍ରକଳ୍ପ ସଂବନ୍ଧୀୟ ନୁହେଁ, ସାମଗ୍ରିକ ଭାବେ ସାମ୍ରାଜ୍ୟବାଦୀ ଶୋଷଣପାଇଁ ଚାଲିଥିବା ବିକାଶ ଢ଼ାଞ୍ଚା ଓ ଧାରା ଉପରେ ସଫଳ ପ୍ରହାରର ବାଟ ଓ ରଣ ନୀତି ତିଆରି କରିବାକୁ ହେବ । ଆଲୋଚନାର ପ୍ରମୁଖବିନ୍ଦୁ ଗୁଡ଼ିକ ଏମିତି ହେଇପାରେ -

(୧) ରାଷ୍ଟ୍ରର ଚରିତ୍ର ସଂବଧରେ ଏକ ସ୍ପଷ୍ଟ ମତ ନିର୍ମାଣ । ରାଷ୍ଟ୍ର ତରଫରୁ ହେଉଥିବା ସଂଗଠିତ ହିଂସାର ମିଳିତ ପ୍ରତିବାଦ । (୨) ବିକଳ୍ପ ବିକାଶର ପରିକଳ୍ପନା । (୩) ସଂପ୍ରତି

ଯନ୍ତ୍ର କୌଶଳ ପଛରେ ଥିବା ରାଜନୈତିକ ଅର୍ଥନୀତିକୁ ବୁଝିବା ଓ ବିକଳ୍ପ ଲୋକ - ଯନ୍ତ୍ର କୌଶଳର ବିଚାର । (୪) ପ୍ରାକୃତିକ ସଂପଦର ପଣ୍ୟକରଣକୁ ବନ୍ଦ କରବା ସ୍ଥାୟୀ ବିକାଶ ନିମନ୍ତେ ବିକଳ୍ପ ଅର୍ଥ ନୈତିକ ଢ଼ାଂଚାର ନିର୍ମାଣ । (୫) ଖଣିର ବିକଳ୍ପ ପାଇଁ ଚିନ୍ତା । ବିକଳ୍ପ ଯନ୍ତ୍ର କୌଶଳ । (୬) ସମୃଦ୍ଧିର ସୀମା ସ୍ଥିର ବିତର୍କକୁ ଆଗକୁ ବଢ଼େଇବା । (୭) ଆନ୍ଦୋଳନର କୌଶଳ / ପଦ୍ଧତି ସଂପର୍କରେ ଗମ୍ଭୀର ଆଲୋଚନା କେବଳ ନୁହେଁ ପରୀକ୍ଷା ନୀରିକ୍ଷା ଜରୁରୀ କାରଣ ଗଲା ଶତାବ୍ଦୀର ଜନ୍ମିଥିବା ସମସ୍ତ କୌଶଳ ଆଜିର କର୍ପୋରେଟ ଗଣତନ୍ତ୍ର ସାମ୍ନାରେ ଅପ୍ରାସଙ୍ଗିକ ହେବାରେ ଲାଗିଛି । (୮) ସଂଗଠନ ଲାଗି ପାଣ୍ଠି ସଂଗ୍ରହର ଚରିତ୍ର । (୯) ସମାଜରେ ପ୍ରଚଳିତ ବ୍ୟବସ୍ଥା ବିରୋଧରେ ଓ କଳ୍ପିତ ଆଦର୍ଶ ବ୍ୟବସ୍ଥା ସମନ୍ଧରେ ବିଚାର ନିର୍ମାଣ, ସେ ଅନୁରୂପ କାର୍ଯ୍ୟକ୍ରମ ସ୍ଥିର କରିବା, ସେ ଅନୁରୂପ ସାହିତ୍ୟ ନିର୍ମାଣ ଓ ତାର ପ୍ରଚାର ପ୍ରସାର ।

ଏ ସବୁ ବିନ୍ଦୁ ମୂଳରେ 'ବିକାଶ'ର ପ୍ରଶ୍ନ ହେଲା ଅସଲ । ଆପାତତଃ ସୀମିତି ଅଥଚ ସମସ୍ତଙ୍କର ସଂପନ୍ନତାକୁ ଆଖି ଆଗରେ ରଖି ବିକଳ୍ପ ବିକାଶ, ଶିକ୍ଷ, ଜଳ, ଜଙ୍ଗଲ ନୀତି ତଥା ରାଷ୍ଟ୍ରତନ୍ତ୍ର ନିର୍ମାଣ ସଂପର୍କରେ ବିଚାର ବିମର୍ଷ ଜାରି ରହୁ । ସ୍ଥାନୀୟ ସଂଗଠନ ଗୁଡ଼ିକୁ ମଜବୁତ୍ କରିବା ସହ ବାକି ଶକ୍ତି ଗୁଡ଼ିକ ସହ ସଂବାଦ ସମନ୍ୱୟ ଓ ମିଳିତ ଲଢ଼େଇର କାର୍ଯ୍ୟକ୍ରମ ଜାରି ରହୁ ।

**ସହଯୋଗୀ ଲେଖା:**


୧. ଏକ ବିକଳ୍ପ ବିକାଶ ଦୃଷ୍ଟିର ଅନିବାର୍ଯ୍ୟତା – କିଶନ ପଟ୍ଟନାୟକ, ବିକଳ୍ପ ବିଚାର, ସଂଖ୍ୟା –୨୬

୨. ଓଡିଶାର ନୂତନ ଶିକ୍ଷନୀତି: ସଂପଦ ଲୁଟ ପାଇଁ ଏକ ଷଡଯନ୍ତ୍ର ,ବିକଳ୍ପ ବିଚାର, ସଂଖ୍ୟା –୨୬

୩. ଶିକ୍ଷ ନୀତି ଓ ରିହାତି : ବିରେନ୍ଦ୍ର ନାଏକ , ବିକଳ୍ପ ବିଚାର, ସଂଖ୍ୟା –୨୬

୪. ଓଡିଶାରେ ଶିଳ୍ପାୟନ ଓ ବେରୋଜଗାରୀ : ରାଜେନ୍ଦ୍ର ଷଡ଼ଙ୍ଗୀ , ବିକଳ୍ପ ବିଚାର, ସଂଖ୍ୟା –୨୩

୫. ଖଣିର ବିକଳ୍ପ : କିଶନ ପଟ୍ଟନାୟକ, (ବିଚାରରେ ଟିପା ଖାତା)

୬. ଭାରତରେ ନବ୍ୟସାମ୍ରାଜ୍ୟବାଦୀ ଅର୍ଥନୀତି : ଡ. ଗୋଲକବିହାରି ନାଥ,

୭. ଭିଟାମାଟିର ଲଢ଼େଇ ପୁସ୍ତକର ମୁଖବନ୍ଧ : କିଶନ ପଟ୍ଟନାୟକ

୮. ବିଚାରର ଲଢ଼େଇ ଓ ଲଢ଼େଇର ବିଚାର : ସରୋଜ, ଅନ୍ୱେଷା – ୭

୯. ବିକାଶ, ଖଣି ଓ ଜନ ଆନ୍ଦୋଳନ : ଦେବ ରଞ୍ଜନ

୧୦. ସାଂପ୍ରତିକ ସଂକଟ ଓ ସମାଧାନର ରାସ୍ତାରେ ଥିବା ବାଧକ ଶକ୍ତି ଓ ତତ୍ତ୍ୱ : ସରୋଜ, ଅନ୍ୱେଷା – ୧୧


ପ୍ରସ୍ତୁତି: ସରୋଜ

ଏକ ଚାଟିଆ ବ୍ୟବସାୟର ବିକାଶ
(ପରିସମ୍ପତ୍ତି କୋଟିରେ)

| ପରିବାର | ୧୯୬୩-୬୪ | ୭୦-୭୧ | ୮୩-୮୪ | ୮୯-୯୦ |
|---|---|---|---|---|
| ବିରଲା | ୨୯୩ | ୬୮୭ | ୨୮୩୨ | ୮୪୭୩ |
| ଟାଟା | ୪୧୮ | ୬୧୧ | ୨୬୭୨ | ୮୫୩୧ |
| ରିଲାଏନ୍ସ | --------- | -------- | ୫୬୩ | ୩୬୦୦ |
| ଏଲ ଏଣ୍ଡ ଟି | --------- | -------- | ୪୨୪ | ୧୬୮୨ |
| ବଜାଜ୍ | --------- | -------- | ୩୬୪ | ୧୩୯୧ |
| ସିଂଘାଣିଆ | ୫୯ | ୧୧୩ | ୬୭୪ | ୨୧୩୯ |
| ମୋଫତଲାଲ | --------- | -------- | ୬୯୫ | ୧୩୦୪ |

ସ୍ରୋତ: ସି.ଏମ.ଆଇ.ଇ, ଅଗଷ୍ଟ ୧୯୯୩

କେ.ସି. ଗୁପ୍ତାଙ୍କ ଅଧ୍ୟକ୍ଷତାରେ ୧୯୭୫ରେ ଏକଚାଟିଆ ବ୍ୟବସାୟ ସଂପର୍କରେ ଏକ ଅନୁଧ୍ୟାନ କମିଟୀ ବସିଥିଲା । ଏହି କମିଟୀ ଏକଚାଟିଆ ପୁଂଜିପତି ମାନଙ୍କର ବିକାଶ ଓ ତାର ସାମାଜିକ-ଅର୍ଥନୈତିକ ପ୍ରଭାବ ଉପରେ ଏକ ରିପୋର୍ଟ ପ୍ରସ୍ତୁତ କରିଥିଲା । ୧୩୮୦ଟି ଉତ୍ପାଦନ ସାମଗ୍ରିକୁ ନେଇ କମିଟୀ ଦେଖିବାକୁ ପାଇଥିଲା ଯେ, ୮୮୦ଟି ସାମଗ୍ରିକୁ ନେଇ ଏକଚାଟିଆ ବ୍ୟବସାୟ ଚାଲିଛି । ଏମାନଙ୍କ ମଧ୍ୟରୁ ୪୨୫ଟି ଦ୍ରବ୍ୟରେ କେବଳ ଜଣେ ମାତ୍ର ଉତ୍ପାଦକ, ୨୭୫ଟି ଦ୍ରବ୍ୟରେ କେବଳ ୨ଜଣ ଉତ୍ପାଦକ ଓ ୧୬୦ଟି ଦ୍ରବ୍ୟରେ କେବଳ ୩ଜଣ ଉତ୍ପାଦକ ଦ୍ରବ୍ୟ ଉତ୍ପାଦନ କରୁଛନ୍ତି । କମିଟୀ ଏକଥା ମଧ୍ୟ ଦେଖିଥିଲେ ଯେ, ୭୫ଟି ବ୍ୟବସାୟୀଙ୍କ ପରିବାର ଘରୋଇ କ୍ଷେତ୍ରରେ ଶତକଡା ୪୭ଭାଗ ସଂପତିର ମାଲିକ ଅଛନ୍ତି । ୯୦ ପରବର୍ତ୍ତି ସ୍ଥିତି ଆହୁରି ବଦଳିଥିବ କାରଣ ଏ ଭିତରେ ଅନେକ ବହୁ ରାଷ୍ଟ୍ରୀୟ କଂପାନୀଙ୍କର ପ୍ରବେଶ ଘଟି ସାରିଛି । ଅନେକ ଦେଶୀ କଂପାନୀ ବହୁ ରାଷ୍ଟ୍ରୀୟ କଂପାନୀ ମାନଙ୍କ ସହ ମିଶି କାମ କରୁଥିବା ବେଳେ ଅନେକ କଂପାନୀର ଅସ୍ତିତ୍ୱ ବିଲୀନ ହୋଇଗଲାଣି ।

| ଓଡିଶାର ଖଣିଜ ସଂପଦ ଭାରତର ମୋଟ ସଂପଦର କେତେ ଶତକଡା | | |
|---|---|---|
| କ୍ରୋମାଇଟ | ୯୮% | ୧୮୩ ମେଟ୍ରିକ ଟନ |
| ବକ୍ସାଇଟ | ୭୦% | ୧୬୨୬ମେଟ୍ରିକ ଟନ |
| ଲୁହାପଥର | ୨୬% | ୩୧୨୦୧ ମେଟ୍ରିକଟନ |
| କୋଇଲା | ୨୫% | ୪୪୩୦୪ ମେଟ୍ରିକ ଟନ |
| ଡୋଲାମାଇଟ | ୧୨% | ୫୨୩ ମେଟ୍ରିକ ଟନ |
| ଚୂନପଥର | | ୧୦୧୭ମେଟ୍ରିକ ଟନ |
| ଓଡିଶାର ଖଣି ନିର୍ଦ୍ଦେଶାଳୟ | | |

| ରାଜ୍ୟରେ ଲୁହାପଥରର ସ୍ଥିତି ଓ ଆବଣ୍ଟନ | |
|---|---|
| ଓଡିଶାରେ ଗଚ୍ଛିତ ଲୁହାପଥର | ୪୧୭୭ ନିୟୁତ ଟନ୍ |
| ଓଡିଶା ଖଣି ନିଗମ, ସେଲ,ଟିସ୍କୋ, ନୀଳାଚଳ ଇସ୍ପାତ ନିଗମ ଏବଂ ମେସ୍କୋ | ୩୧୩୩ ନିୟୁତ ଟନ୍ |
| ପୋସ୍କୋ ପୂର୍ବ ୩୬ଟି କଂପାନୀ ପାଇଁ | ୨୦୧୬ ନିୟୁତ ଟନ୍ |
| ପୋସ୍କୋ ସହ | ୧୦୦୦ ନିୟୁତ ଟନ୍ |
| ସରକାରଙ୍କ ହାତରେ | ୧୦୪୪ ନିୟୁତ ଟନ୍ |

ସୂତ୍ରନ୍ୟ: ଓଡିଶା ବ୍ୟୁରୋ ଅଫ୍ ମାଇନ୍ସ - ୨୦୦୬

ରାଉରକେଲା ଓ ଭିଲାଇ ଷ୍ଟିଲ ପ୍ଲାଣ୍ଟରେ ନିଯୁକ୍ତିର ସ୍ଥିତି:୧୯୮୬ରେ ଦୈନିକ ହାରାହାରି ୭୮୯୨୯୫ ଲୋକ ଖଣି ଉଦ୍ୟୋଗରେ କାମ କରୁଥିଲେ । ୧୯୯୫-୯୬ରେ ୭୪୩୪୦୪କୁ ଖସି ଆସିଛି ; ଭିଲାଇ ପ୍ଲାଣ୍ଟ ୮୦ ଦଶକରେ ଯେଉଁଠି ୯୨ ହଜାର ଲୋକ ଓ ତତ୍ ସଂଲଗ୍ନ ଖଣି କ୍ଷେତ୍ରରେ ୧୫ ହଜାର ଲୋକ କାମ କରୁଥିଲେ ବର୍ତ୍ତମାନ ପ୍ଲାଣ୍ଟରେ ୪୦ହଜାର ଓ ଖଣିରେ ୮ ହଜାର ଲୋକ କାମ କରୁଛନ୍ତି । ରାଉରକେଲା ଷ୍ଟିଲପ୍ଲାଣ୍ଟ ଓ ଖଣିରେ ଏକଦା ୬୪ ହଜାର ଲୋକ କାମ କରୁଥିବା ବେଳେ ଏବେ ୪୦ ହଜାର ଲୋକ କାମ କରୁଛନ୍ତି । ଏହା ବହୁ ଶିଘ୍ର ୨୪ ହଜାରକୁ ଖସି ଆସିବ । ୬୦ ଦଶକରେ ଭିଲାଇ ପ୍ଲାଣ୍ଟ ଯୋଗୁଁ ସମୁଦାୟ ୩୧ ହଜାର ଲୋକ ଓ ରାଉରକେଲା ପ୍ଲାଣ୍ଟ ଯୋଗୁଁ ୨୪ ହଜାର ଲୋକ ବିସ୍ଥାପିତ ହୋଇଥିଲେ । (ଦେବ ରଞ୍ଜନ: ବିକାଶ, ଖଣି ଓ ଜନ ଆନ୍ଦୋଳନ)

# କିଶନ ପଟ୍ଟନାୟକଙ୍କ ବିଚାର

● ପ୍ରଥମେ ଭୂପୃଷ୍ଠକୁ ଓ ତାହା ଉପରେ ବାସ କରୁଥିବା ଲୋକଙ୍କୁ ଉନ୍ନତ କର । ସେମାନେ ଉନ୍ନତ ହେଲା ପରେ ଏବଂ ଜଙ୍ଗଲ ଓ ଜମି ଉପରେ ସେମାନଙ୍କର ଅଧିକାର ସ୍ଥାପିତ ହେବା ପରେ ସେମାନେ ନିଜେ ସ୍ଥିର କରିବେ ଯେ, ମାଟିତଳେ ଥିବା ଖଣିଜ ସମ୍ପଦର ଉପଯୋଗ ସେମାନେ କିପରି ଭାବେ କରିବେ ।

● ଏ.କେ.ବି.କେ କଣ ?

କେବିକେ ଜିଲ୍ଲା ହେଉଛି ଓଡିଶାରେ ବକ୍ସାଇଟ୍ ର ଭଣ୍ଡାର । ତେଣୁ ଏହାର ଭିତିରିଆ ଅର୍ଥ ହେଉଛି ବକ୍ସାଇଟ୍ ଜିଲ୍ଲା । ଆଲୁମିନା ଓ ଆଲୁମିନିୟମ ଉତ୍ପାଦନର ଏକ ଶିଳ୍ପାଞ୍ଚଳ ହେବ । ଦେଶୀ ବିଦେଶୀ କଂପାନୀ ମାନେ ଏଠାରେ ପ୍ରବେଶ କରିବେ । ତେଣୁ ରାସ୍ତା, ଆଲୁଅ-ବିଜୁଳୀ, ପାଣି ଯୋଗାଇବାକୁ ହେବ । ଏହା ହେଲା କେବିକେ ଜିଲ୍ଲା ର ବିକାଶ ।

● ବିଶ୍ୱ ବ୍ୟାଙ୍କ ହେଉଛି ଆନ୍ତର୍ଜାତିକ ବିକାଶ ର ଖଳ ମସ୍ତିଷ୍କ । ସାମ୍ରାଜ୍ୟବାଦୀ ଦେଶର କମ୍ପାନୀମାନେ ତୃତୀୟ ବିଶ୍ୱର ଯେଉଁ ଯେଉଁ ଅଂଚଳରେ ପ୍ରବେଶ କରିବାକୁ ଚାହାନ୍ତି, ସେ ଅଂଚଳକୁ ବାଟ ଫିଟାଇ ଦିଅନ୍ତି ବିଶ୍ୱବ୍ୟାଙ୍କ ଓ ତାର ଶାଖାମାନେ ।

● ଦୁଇଟି ପ୍ରଶ୍ନ ଅତି ଗୁରୁତର : (୧) ଖଣି ମାନଙ୍କର ଭବିଷ୍ୟତ କଣ ହୋଇପାରେ ? (୨) ଆଦିବାସୀମାନଙ୍କ ସାମୂହିକ ଜୀବନର କୌଣସି ଭବିଷ୍ୟତ ଅଛି କି ? ଆଧୁନିକତାର ବିକାଶ ବେଦୀରେ ଯଦି ଏକ ସମୂହ ରୂପରେ କେହି ବଳି ପଡିଛନ୍ତି, ସେ ହେଉଛନ୍ତି ଆଦିବାସୀ । ସାରା ଭାରତରେ ଆଦିବାସୀ ଗାଁ, ଆଦିବାସୀ ଅଂଚଳ ଭୁଷୁଡି ଯାଉଛି । ଅଣଆଦିବାସୀ-ଉଚ୍ଚବର୍ଣ୍ଣର ଲୋକେ ତାଙ୍କ ଅଂଚଳକୁ କେବଳ ପଶୁନାହାନ୍ତି, ତାଙ୍କର ମାଲିକ ହୋଇ ଯାଉଛନ୍ତି ଓ ଧୀରେ ଧୀରେ ସେମାନଙ୍କୁ ତଡିଦେଉଛନ୍ତି । ଓଡିଶାର ଭଦ୍ରସମାଜ ଏ ବିଷୟରେ ମୋଟେ ସଂବେଦନଶୀଳ ନୁହେଁ । ଶିକ୍ଷାରେ ବଡଯୋଗ୍ୟତା ହାସଲ କରି ଆକର୍ଷକ ପଦପଦବୀ ଆଡକୁ ମୁହେଁଇଥିବା ଯୁବକ ଯୁବତୀମାନେ ସବୁଠାରୁ ବେଶୀ ହୃଦୟହୀନ ।

● ଆନ୍ଦୋଳନ କହୁଛି କାଶିପୁରରେ ଖଣି ହେବ ନାହିଁ । ଲାଞ୍ଜିଗଡର ଆନ୍ଦୋଳନ ମଧ୍ୟ କହୁଛି ଏଠାରେ ଖଣି ହେବ ନାହିଁ । ତାହେଲେ ହେବ କେଉଁଠି ? ତାହେଲେ କଣ ଖଣି ହେବ ନାହିଁ । ଏଇଟା ଭୂଲ, ଅତିଭୂଲ ପ୍ରଶ୍ନ । ମୂଳ ପ୍ରଶ୍ନ ହେଉଛି-ଖଣି ଜିନିଷ ଗୁଡିକ କଣ ପାଇଁ ଦରକାର ଓ କେତେ ଦରକାର ? କେତେ ମୋଟର ଗାଡି ଦରକାର ? କେତେ ଉଡାଜାହାଜ ଦରକାର ? କେତେ ବୋମା ଓ ମିସାଇଲ ଦରକାର ? ଗୋଟିଏ ପୁଞ୍ଜିପତି ପରିବାର ପାଇଁ କେତେ ଦଉଲତ ଦରକାର ?

•

ଆହୁରି ଗୁରୁତ୍ୱପୂର୍ଣ୍ଣ ହେଉଛି ଖଣି କାହାର, କିଏ ତାର ମାଲିକ ? ଖଣିଖୋଳା ପାଇଁ କେଉଁ ଟେକନୋଲଜି ହେବା ଉଚିତ ? ଏପର୍ଯ୍ୟନ୍ତ ଖଣିଖୋଳାର ଗୋଟିଏ ଭଲ ଟେକ୍ନୋଲୋଜି ଆବିଷ୍କୃତ ହୋଇନାହିଁ । ଏକ ବିସ୍ତୀର୍ଣ୍ଣ ଅଂଚଳକୁ ଶୁଷ୍କ ଓ ଅପରିଷ୍କୃତ କରିଦେବାର ପ୍ରଚଳିତ ଖଣିଖୋଳିବାର ଏକ ବିକଳ୍ପ ସଭ୍ୟ, ମାନବୀୟ ଟେକ୍ନୋଲୋଜି ଆବିଷ୍କୃତ ନ ହୋଇଛି ଏବଂ ଏକ ଗଣତାନ୍ତ୍ରିକ ଖଣିବ୍ୟବସ୍ଥାର ଆଇନ ତିଆରି ନହୋଇଛି, ସେ ପର୍ଯ୍ୟନ୍ତ ନୂଆ ଖଣି ଖୋଳିବାଟା ବନ୍ଦ ହୋଇଗଲେ ପୃଥିବୀର ଓ ମାନବ ଜାତିର କୌଣସି କ୍ଷତି ହୋଇଯିବ ନାହିଁ ।

- ଏଣୁ ପ୍ରଚଳିତ ବିକାଶ ବିରୋଧୀ ଯେକୌଣସି ଜନ ଆନ୍ଦୋଳନକୁ ତେଜିୟାନ କରିବାକୁ ହେଲେ ଜନସାଧାରଣ ଭିତରୁ ଏକ ନେତୃତ୍ୱର ଆବିର୍ଭାବ ହେବା ଦରକାର । ଏହା ସାଙ୍ଗକୁ ସକ୍ରୀୟ ସହଯୋଗୀ ଭୂମିକାରେ ଏପରି ଏକ କର୍ମୀଦଳ ଗଠିତ ହେବା ଦରକାର ଯେଉଁମାନେ ଦେଶଦୁନିଆରେ ଗତି ଓ ଅଧୋଗତିକୁ ବୁଝିପାରୁଥିବେ, ସଂଘର୍ଷର ସ୍ଥାନୀୟ ଲକ୍ଷ୍ୟକୁ ସମାଜ ପରିବର୍ତ୍ତନର ବୈପ୍ଳବିକ ଲକ୍ଷ୍ୟ ସହ ଯୋଡ଼ି ତା'ର ସାଧନ ପାଇଁ ଜୀବନ ଉତ୍ସର୍ଗ କରିବାର ମନୋବଳ ସଂଚୟ କରିଥିବେ । + + + +

## ଭାରତର ଶିଳ୍ପାୟନର ଚାରିଟି ପର୍ଯ୍ୟାୟ

ପ୍ରଥମ ପ୍ରର୍ଯ୍ୟାୟ ଶ୍ରମାୟନ । କୁମ୍ଭାର, କମାରଶାଳ, ଚମାରଶାଳ ତଥା ମୁଦ୍ରା ପ୍ରଚଳନ ଓ ବାଣିଜ୍ୟର ବିକାଶ । ମାତ୍ର ଉପନିବେଶବାଦ ଯୋଗୁଁ ଏହାର ସ୍ୱାଭାବିକ ଅଗ୍ରଗତିର ରାସ୍ତା ଅବରୁଦ୍ଧ ହୋଇଗଲା । ଅବଶ୍ୟ ସାମନ୍ତିଶକ୍ତି, ଆଭ୍ୟନ୍ତରୀଣ ସାମନ୍ତବାଦ ତାକୁ ସମୃଦ୍ଧ ହେବାକୁ ଦେଇଥାନ୍ତା କି ନାହିଁ ସେ ଏକ ପ୍ରଶ୍ନ । ଦ୍ୱିତୀୟ ପର୍ଯ୍ୟାୟ ହେଲା ବ୍ରିଟିଶ ଇଣ୍ଡିଆ ଦ୍ୱାରା ଉପନିବେଶିକ ଶୋଷଣ ପାଇଁ ଉଦ୍ଦିଷ୍ଟ ଶିଳ୍ପାୟନ । ଏହା ୧୯୪୭ ଯାଏଁ ଜାରି ରହିଲା । ଏ ପ୍ରକ୍ରିୟା ରେ ବିଦେଶୀ କଂପାନୀ ଗୁଡିକ ସଂପଦର ଓ ଶ୍ରମର ଲୁଣ୍ଠନ କଲେ । ପରିବହନ ଖର୍ଚ୍ଚକୁ କମାଇବା ଓ ଶସ୍ତା ଶ୍ରମର ଫାଇଦ ନେବା ଲାଗି, ତାଙ୍କ ଲୁଣ୍ଠନ ବ୍ୟବସ୍ଥାକୁ ସାହାଯ୍ୟ କଲାଭଳି କିଛି ଉତ୍ପାଦନ ଏ ଦେଶରେ କଲେ । ଏଥିରେ କିଛି ଦେଶୀ ପୁଞ୍ଜିପତି ଜନ୍ମ ନେଲେ । ଦଲାଲି କଲେ । ୧୯୪୭ ପରର ଶିଳ୍ପାୟନ ଏଇ ତୃତୀୟ ପର୍ଯ୍ୟାୟର ପରିବର୍ଦ୍ଧନ କହିଲେ ଚଲେ । ମାତ୍ର ସରକାରୀକରଣ, ସରକାରୀ ପୁଂଜିଲଗାଣ (ରାଷ୍ଟ୍ରୀୟ ପୁଂଜିବାଦୀ ଉତ୍ପାଦନ) ଯୋଗୁଁ କିଛି ନିଯୁକ୍ତି ମିଳୁଥିଲା ଏବଂ ଦେଶରେ ଚାହିଦା ଥିବା ବହୁ ଦ୍ରବ୍ୟର ଉତ୍ପାଦନକୁ କିଛିଟା ଗୁରୁତ୍ୱ ଦିଆଯାଇଥିଲା । ସାଂପ୍ରତିକ ପର୍ଯ୍ୟାୟକୁ ଆମେ ସଭିଏଁ ଜଗତିକରଣ କହୁଛୁ । । ଚରମ ଲୁଟ୍ ପାଇଁ ପରମ ଛୁଟ୍ । ଏହାର ପୂର୍ବ ପର୍ଯ୍ୟାୟର ଶିଳ୍ପ ଗୁଡିକରେ (ରାଉରକେଲା, ଦୁର୍ଗ, ଭିଲାଇ) ଯାହା କିଛି ବି ନିଯୁକ୍ତି ବ୍ୟବସ୍ଥା ଥିଲା ତାହା ଆଜିର ଶିଳ୍ପାୟନରେ ନାହିଁ । ମଣିଷକୁ ପଶୁ ଖଟଣିରୁ ରକ୍ଷା କରିବା ପାଇଁ ଚାହିଦା ଅନୁରୂପ ଉତ୍ପାଦନ ପାଇଁ ଯନ୍ତ୍ର ଆବଶ୍ୟକ ମାତ୍ର ମଣିଷର କର୍ମଠ ହାତରୁ କାମ ଛଡାଇନେବା ପାଇଁ ବ୍ୟବହୃତ ଯନ୍ତ୍ର ସାମଗ୍ରିକ ଭାବେ ମାନବ ସଭ୍ୟତାର ବିକାଶର ପରିପନ୍ଥୀ

## ଖଣିକ୍ଷେତ୍ରରେ ନିଯୁକ୍ତି ଓ ଓଡିଶା

ଓଡିଶା ଅର୍ଥନୈତିକ ସର୍ଭେ ତଥ୍ୟ ଅନୁସାରେ ଏଥି ମଧ୍ୟରୁ ବକ୍ସାଇଟ୍ କ୍ଷେତ୍ରରେ କୋରାପୁଟ ଜିଲ୍ଲାର ନାଲ୍କୋ ଦ୍ୱାରା ୧୯୯୫-୯୬ ରେ ୫୪୧ ଜଣ ଶ୍ରମିକ କାମ କରୁଥିବା ବେଳେ ନାଲ୍କୋ ଆଧୁନିକୀ କରଣ ପରେ ଏହା ୭୫୮ ଜଣରେ (କେବଳ ଖଣି କ୍ଷେତ୍ରରେ ୩୯୦ ଜଣ) ପହଁଞ୍ଚିଛି । ଶ୍ରମିକ ସଂଖ୍ୟା ପ୍ରାୟ ୪୦% ବଢିଲାବେଳକୁ ଉତ୍ପାଦନ ୫୭% ବଢିଛି ।

ଲୁହା ଖଣିରେ (ଯାଜପୁର, କେଉଁଝର, ମୟୁରଭଞ୍ଜ ଓ ସୁନ୍ଦରଗଡ ଜିଲ୍ଲା) ଉତ୍ପାଦନ ୭୧% ବଢିଲାବେଳକୁ ସମୁଦାୟ ଶ୍ରମିକ ସଂଖ୍ୟା୧୭% କମିଛି । ଅର୍ଥାତ୍ ୧୯୯୫-୯୬ ମଧ୍ୟରେ ୧୪୮୫୬ ଲୋକ କାମ କରୁଥିଲେ । ଏହା ୧୯୯୯-୨୦୦୦ ବେଳକୁ ୧୨୫.୮୩ କୁ ଖସିଛି । ଅର୍ଥାତ୍ ୧୫% କମ୍ । କେବଳ ମୟୁରଭଞ୍ଜ ଜିଲ୍ଲାରେ ସମୁଦାୟ ଶ୍ରମିକ ସଂଖ୍ୟା ୮୪୮ ରୁ ୩୬୭ କୁ ଓ କେଉଁଝର ଜିଲ୍ଲାରେ ଶ୍ରମିକ ସଂଖ୍ୟା ୨୯୨୮ ରୁ ୧୨୦୮ କୁ ଖସିଛି । ଏହି ପରିପ୍ରେକ୍ଷୀରେ ପୋସ୍କୋପରି ବୃହତ୍ତ ପ୍ରକଳ୍ପ ଆସିଲେ କିଛିଟା ନିଯୁକ୍ତି ଅଧିକ ହେବ ମାତ୍ର ଉତ୍ପାଦନର ମାତ୍ରା ଅନୁସାରେ ତାହା ବହୁତ କମ ହେବ ।

କୋଇଲା କ୍ଷେତ୍ରରେ ସେହି ୧୯୯୫-୯୬ ରୁ ୧୯୯୯-୨୦୦୦ ମଧ୍ୟରେ ସମୁଦାୟ ଉତ୍ପାଦନ ବୃଦ୍ଧି ୧୯୪% ହେଲା ବେଳକୁ ସମଗ୍ର ଅନୁଗୁଳ, ଝାରସୁଗୁଡା ଓ ସୁନ୍ଦରଗଡ ଜିଲ୍ଲାରେ ସମୁଦାୟ ଶ୍ରମିକ ସଂଖ୍ୟା ୧୯୪୨୦ ରୁ ୧୯୭୩୯ ସଂଖ୍ୟାକୁ ଅର୍ଥାତ୍ ମାତ୍ର ୨% ବଢିଛି ।

ସମଗ୍ର ଓଡିଶାରେ ୧୯୯୫-୯୬ ମଧ୍ୟରେ ୬୫୧୪୭ ଶ୍ରମିକ ଖଣିରେ କାମ କରୁଥିବାବେଳେ ୧୯୯୯-୨୦୦୦ ବେଳକୁ ଏହାକୁ ୫୩୨୦୯ ଅର୍ଥାତ୍ ୨୦% ଶ୍ରମିକ ହ୍ରାସ ହୋଇଛନ୍ତି । ଅନ୍ୟ ପଟରେ କିନ୍ତୁ ଉତ୍ପାଦନ ୧୨୧% ବଢିଛି ଓ ରପ୍ତାନୀ ୩୫.୬% ବଢିଛି । ଏହା କେବଳ ଆଧୁନିକୀକରଣ, ଉନ୍ନତ ଯନ୍ତ୍ର ବ୍ୟବହାର ଓ ଉଦାରବାଦୀ ଅର୍ଥନୀତି ହେତୁ ହୋଇଛି । ଏକ ହିସାବରୁ ଦେଖାଯାଇଛି ଯେ, ୧ ହେକ୍ଟର ଜମିରେ (୨.୫ ଏକର) ଖଣି କରାଗଲେ ତାହା ୧.୫୬ ଜଣ ଶ୍ରମିକଙ୍କୁ ନିଯୁକ୍ତି ଦେଇଥାଏ । ଅଥଚ ସେତିକି ଜମିରେ ୮-୧୦ ଜଣ ଚାଷୀ ଓ ଚାଷୀ ଶ୍ରମିକ ନିଯୁକ୍ତି ପାଇଥାନ୍ତି । ଅବଶ୍ୟ ଏହି ସଂଖ୍ୟା ଜିଲ୍ଲା ଅନୁସାରେ ବଦଳିପାରେ, ଯେମିତିକି ରାୟଗଡା ଜିଲ୍ଲାପାଇଁ ଏହା ୯.୪ ଅଟେ ।

# ବିକାଶ ବିତର୍କ

**ପ୍ରଶ୍ନ - ବର୍ତ୍ତମାନ ଶିଳ୍ପାୟନକୁ ବିରୋଧ କାହିଁକି ?**

**ଉତ୍ତର** - ବର୍ତ୍ତମାନ ଶିଳ୍ପାୟନ ଧାରା ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ଓଡ଼ିଶାର ଶିଳ୍ପାୟନ ପ୍ରକ୍ରିୟା ତଥା ବାସ୍ତବ ସ୍ଥିତିର ଏକ ସଂକ୍ଷେପ ଆକଳନ ଜରୁରୀ । ଓଡ଼ିଶାରେ ଶିଳ୍ପାୟନର କଥା ମଧୁବାବୁ ଉତ୍କଳ ଟ୍ୟାନେରୀ ଉଦ୍ୟମ ଦିନ ଠାରୁ ଦେଖିବାକୁ ମିଳେ [୧] ("ଓଡ଼ିଶା ଦରିଦ୍ର କାହିଁକି ?" - ମନୋରଂଜନ ମହାନ୍ତି ଓ ବିଜୟ ବହିଦାର) । ଉତ୍ତର ସ୍ୱାଧୀନତା କାଳରେ ନିର୍ଦ୍ଦିଷ୍ଟ ଭାବରେ କହିଲେ, ୬୦ ଦଶକରେ ପଞ୍ଚାୟତ ସ୍ତରୀୟ ଶିଳ୍ପ, ୮୦ ଦଶକରେ "୧୦୦ ଦିନରେ ୧୦୦୦ କୋଟି ଟଙ୍କା ବ୍ୟୟରେ ୧୦୦୦ ଶିଳ୍ପ"ର ସ୍ଲୋଗାନ, ୯୦ ଦଶକରେ ରାଉରକେଲା ପରେ ଦ୍ୱିତୀୟ ବୃହତ୍ତ ଇସ୍ପାତ କାରଖାନା ପ୍ରତିଷ୍ଠାର ସ୍ଲୋଗାନ । ରାଉରକେଲା ଇସ୍ପାତ ଶିଳ୍ପ ଏବଂ ନାଲ୍‌କୋ (କେନ୍ଦ୍ର ସରକାରଙ୍କର ସାର୍ବଜନୀନ କ୍ଷେତ୍ରର ଉଦ୍ୟୋଗ) ଛାଡ଼ିଦେଲେ, ଓଡ଼ିଶାରେ ସ୍ଥାପିତ ବଡବଡ ଶିଳ୍ପ ଯଥା ଓଟିଏମ୍ (Orissa Textile Mills), ଓରିଏଣ୍ଟାଲ କାଗଜ କଳ (Oriental Paper Mill), କଳିଙ୍ଗ ଟ୍ୟୁବ୍‌ସ (Kalinga Tubes), ଭାସ୍କର ଟେକ୍ସଟାଇଲ୍ସ (Bhaskar Textiles) ବନ୍ଦ ହୋଇଯାଇଛି । ରାଜ୍ୟ ସରକାରଙ୍କ ଉଦ୍ୟମରେ ପ୍ରତିଷ୍ଠିତ ୬୮ଟି ପ୍ରକଳ୍ପରୁ ୩୪ଟି ଚାଲୁଛି । ୩୪ଟି ବନ୍ଦ ପଡିଛି । ଶିଳ୍ପାଞ୍ଚଳମାନଙ୍କରେ ସ୍ଥାପିତ କ୍ଷୁଦ୍ର ଉଦ୍ୟୋଗଗୁଡ଼ିକ ମଧ୍ୟରୁ ଅଧିକାଂଶ ବନ୍ଦ ହୋଇଯାଇଛି [୨] (Five decades of Industrial Development in a Backward state - The Case of Orissa, by K.C. Samal, Siblal Meher and A. Rath) ।

ଓଡ଼ିଶାରେ ଶିଳ୍ପାୟନର ଏ ବିଫଳ କାହାଣୀ ପରେ, ସଫଳ କାହାଣୀ ଗୁଡ଼ିକୁ ବିଚାର କରାଯାଉ । ରାଉରକେଲା ଓ ନାଲ୍‌କୋ । ରାଉରକେଲା ୫୦ ଦଶକରେ ସ୍ଥାପିତ, ନାଲ୍‌କୋ ୮୦ ଦଶକରେ । ଓଡ଼ିଶାର ଗଚ୍ଛିତ ଲୁହାପଥରକୁ ଉପଯୋଗ କରି ରାଉରକେଲା ଇସ୍ପାତ ପ୍ରକଳ୍ପ ତିଆରି ହେଲା, ଇସ୍ପାତ ଓ ଲୁହା ଉତ୍ପାଦନ ହେଲା । ଲୁହା ଓ ଇସ୍ପାତକୁ ବ୍ୟବହାର କରି କୌଣସି ବ୍ୟବହାର୍ଯ୍ୟ ପଦାର୍ଥ (finished goods) ତିଆରି ହୋଇପାରିଲା କି ? ସେ ସବୁକୁ ବ୍ୟବହାର କରି କୌଣସି ଆନୁସଙ୍ଗିକ ଶିଳ୍ପ (Anciallary Industry) ଗଢ଼ିଉଠିଲା କି ? ସମାନ କଥା ନାଲ୍‌କୋ କ୍ଷେତ୍ରରେ ବି ଦେଖାଯାଏ । ବକ୍ସାଇଟ୍‌କୁ ଧୋଇ ଆଲୁମିନା ବାହାରିଲା । ଏଠାରେ କିନ୍ତୁ ଆଲୁମିନିୟମକୁ ବ୍ୟବହାର କରି ଆଲୁମିନିୟମ ଜାତ ପଦାର୍ଥ ତିଆରି ହେଲାନାହିଁ । ଏସବୁରୁ ଗୋଟିଏ କଥା ସ୍ପଷ୍ଟ ଯେ ଖଣିଜ ପଦାର୍ଥରୁ ବର୍ଜ୍ୟବସ୍ତୁ

ନିଷ୍କାସନ କରିବା କାମଟି କେବଳ ଓଡିଶାରେ ହେଲା । ଯଦି ସାର୍ବଜନୀନ କ୍ଷେତ୍ର (Public Sector) ଉଦ୍ୟମରେ ଗଠିତ ପ୍ରକଳ୍ପର ଦଶା ଏହା, ତେବେ ଘରୋଇ ଉଦ୍ୟମରେ ଏବେ ହେବାକୁଥିବା ପ୍ରକଳ୍ପରୁ କ'ଣ ଆଶା କରାଯିବ ।

୯୦ ଦଶକ ପରେ ଯେତେବେଳେ ବଜାରୀକରଣ, ଜଗତୀକରଣ, ଉଦାରୀକରଣର ହାଓ୍ୱା ପ୍ରବଳ ବହିବା ଆରମ୍ଭ କରିଛି ସେତେବେଳର ଶିଳ୍ପାୟନକୁ ଦେଖାଯାଉ । ୧୯୯୨ରେ ଉତ୍କଳ ଆଲୁମିନା (କାନାଡାର ଆଲକାନ୍ ଓ ହିଣ୍ଡାଲକୋ ALCAN & HINDALCO ର ଏକ ମିଳିତ ଉଦ୍ୟୋଗ) ସହ ଚୁକ୍ତି ହୁଏ । କାଶୀପୁର (ରାୟଗଡା)ରେ ଆଲୁମିନା ପ୍ରକଳ୍ପ ପାଇଁ ପ୍ରକଳ୍ପ ରିପୋର୍ଟ ଅନୁସାରେ, ବାଫାଲିମାଳିରେ ଗଚ୍ଛିତ ଥିବା ୧୯୦ ନିୟୁତ ଟନ୍ ବକ୍ସାଇଟ୍‌କୁ ଏହି ପ୍ରକଳ୍ପର ଉପଯୋଗ କରାଯିବ ଏବଂ ଏହା ଏକ ୧୮୦ ପ୍ରତିଶତ ରପ୍ତାନୀ ଭିତ୍ତିକ ପ୍ରକଳ୍ପ । ପ୍ରକଳ୍ପର କାର୍ଯ୍ୟକାଳ ୨୫ ରୁ ୩୦ ବର୍ଷ । ଅର୍ଥାତ୍ ବକ୍ସାଇଟ୍ ସରିଗଲେ ପ୍ରକଳ୍ପ ଶେଷ । ଲାଞ୍ଜିଗଡ (କଳାହାଣ୍ଡି)ରେ ହେବାକୁ ଯାଉଥିବା ବେଦାନ୍ତ ଆଲୁମିନା ପ୍ରକଳ୍ପ (ଲଣ୍ଡନସ୍ଥିତ ଷ୍ଟେରଲାଇଟ୍ କମ୍ପାନୀ) ନିୟମଗିରିରେ ୭୩ ନିୟୁତ ଟନ୍ ବକ୍ସାଇଟ୍‌କୁ ଉପଯୋଗ କରି ୧ ନିୟୁତ (ବର୍ଷକୁ) ଟନ୍ ଆଲୁମିନା ଉତ୍ପାଦନ କରିବ । ଏହା ବି ଏକ ରପ୍ତାନିଭିତ୍ତିକ ପ୍ରକଳ୍ପ । ପ୍ରକଳ୍ପର କାର୍ଯ୍ୟକାଳ ମାତ୍ର ୨୫ ବର୍ଷ । (ଉଲ୍ଲେଖଯୋଗ୍ୟ ଯେ ବକ୍ସାଇଟ୍ ଓ ଆଲୁମିନାର ଅନୁପାତ ୩:୧ - ଅର୍ଥାତ୍ ୩କିଲୋ ବକ୍ସାଇଟ୍ ବିଶୋଧନ କଲେ ୧ କିଲୋ ଆଲୁମିନା ମିଳିବ, ୨କିଲୋ ବର୍ଜ୍ୟବସ୍ତୁ ବାହାରିବ) । କଳିଙ୍ଗନଗର ଶିଳ୍ପାଞ୍ଚଳରେ ଗଢିଉଠୁଥିବା ଲୌହ ଇସ୍ପାତ ପ୍ରକଳ୍ପଗୁଡିକରେ ଏହାହିଁ ଦେଖିବାକୁ ମିଳେ । ନିଳାଚଳ ଇସ୍ପାତର ମୁଖ୍ୟ କାମ ପିଗ୍ ଆଇରନ୍ ତିଆରି କରିବା, ଯାହା ଏକପ୍ରକାର ଅଶୋଧିତ ଲୌହ ପିଣ୍ଡ ।

ଏ ସମସ୍ତ ଉଦାହରଣରୁ ଗୋଟିଏ କଥା ସ୍ପଷ୍ଟ ଯେ, ଶିଳ୍ପାୟନ ବୋଲି ଯାହା କୁହାଯାଇଛି ଏହା କେବଳ ଖଣିଜ ପଦାର୍ଥକୁ ନିଷ୍କାସନ ଓ ବିଶୋଧନ କରିବା ମାତ୍ର ଏବଂ ବିଶୋଧିତ ଧାତବ ପିଣ୍ଡକୁ ବାହାରକୁ ଚାଲାଣ କରିବା । ଏହାକୁ କ'ଣ ଶିଳ୍ପାୟନ କୁହାଯାଏ ?

ଶିଳ୍ପାୟନ ! ଶିଳ୍ପାୟନ ! ହୁରି ପକେଇବା ପୂର୍ବରୁ ଓଡିଶାରେ ଶିଳ୍ପାୟନର ବାସ୍ତବ ସ୍ଥିତିକୁ ଅନୁଧ୍ୟାନ କରିବା କ'ଣ ଆବଶ୍ୟକ ନୁହେଁ ? ସଚ୍ଚୋଟତାର ସହ କାରଣଗୁଡିକୁ ନଖୋଜି କେବଳ ଭିଡରେ ସାମିଲ ହେବା କ'ଣ ବୌଦ୍ଧିକ ସାଧୁତା ? ଖଣିଜ ସଂପଦକୁ ବଡବଡ କମ୍ପାନୀ ମାନଙ୍କ ହାତକୁ ଟେକିଦେବା କ'ଣ ବିରୋଧଯୋଗ୍ୟ ବିଷୟ ନୁହେଁ ?

ଏବେ ଆସନ୍ତୁ ଦେଖିବା ଏ ବିରୋଧର ସ୍ୱର; କେଉଁମାନେ ଓ କାହିଁକି କରୁଛନ୍ତି ।

ବିଂଶ ଶତାବ୍ଦୀର ଅଶୀ ଦଶକରୁ ଏକବିଂଶ ଶତାବ୍ଦୀର ପ୍ରଥମ ଦଶକ ମଧ୍ୟରେ ବିଭିନ୍ନ

ଶିଳ୍ପ ପ୍ରକଳ୍ପକୁ ବିରୋଧ କରିବାର ନଜିର ଓଡିଶାରେ ଅଛି । ବାଲ୍‌କୋ ପ୍ରକଳ୍ପ (ସମ୍ବଲପୁର) ଟାଟାର ଚିଙ୍ଗୁଡି ପ୍ରକଳ୍ପ (ଚିଲିକା), ଟାଟା ଇସ୍ପାତ ପ୍ରକଳ୍ପ (ଗୋପାଳପୁର), ଉତ୍କଳ ଆଲୁମିନା (କାଶୀପୁର), ବେଦାନ୍ତ ଆଲୁମିନା (ଲାଞ୍ଜିଗଡ), କଳିଙ୍ଗନଗର, ପୋସ୍କୋ (ପାରାଦ୍ୱୀପ)[୩] (ସବିଶେଷ ବିବରଣୀ ପାଇଁ "ଗନ୍ଧମାର୍ଦ୍ଦନ ମାଇନିଂ" ଉପରେ ପିୟୁଡିଆର୍‌ର ଇଂରାଜୀ ରିପୋର୍ଟ, "ମା' ମାଟି ଚିଲିକା", "ଗୋପାଳପୁର ଉପରେ ପିୟୁଡିଆଇ ରିପୋର୍ଟ", "ଭିଟାମାଟି ଆନ୍ଦୋଳନ", "ଷ୍ଟେରେଲାଇଟ୍‌ର ମିଥ୍ୟା ପ୍ରଚାର", "କଳିଙ୍ଗନଗର ଗୁଳିକାଣ୍ଡ" ଉପରେ ପିୟୁସିଏଲ୍ ବିବରଣୀ) ।

ଏଇସବୁ ପ୍ରକଳ୍ପକୁ ବିରୋଧ କରିବାର ସ୍ୱର ମୁଖ୍ୟତଃ ସ୍ଥାନୀୟ ବାସିନ୍ଦାମାନଙ୍କ ନିକଟରୁ ଆସୁଛି । ସେମାନଙ୍କର ଶ୍ରେଣୀ/ଜାତିଗତ ବିନ୍ୟାସକୁ ତର୍ଜମା କଲେ ଦେଖାଯିବ ଯେ ଏ ସମସ୍ତେ ମୁଖ୍ୟତଃ ଛୋଟ ଚାଷୀ, ନାମମାତ୍ର ଚାଷୀ, ଭୂମିହୀନ, ଦଳିତ ଓ ଆଦିବାସୀ ସମୁଦାୟ, ଅର୍ଥାତ୍ ସମାଜର ତଳୁଆ ଗୋଷ୍ଠୀର ମଣିଷ ଓ ଆମ ଜନସଂଖ୍ୟାର ୮୦ ଭାଗରୁ ଊର୍ଦ୍ଧ୍ୱ । ଯେଉଁମାନଙ୍କର ଜୀବିକା ଅବଲମ୍ବନର ଏକମାତ୍ର ସାହାରା ପ୍ରାକୃତିକ ସମ୍ବଳ - ଜମି, ଜଳ, ଜଙ୍ଗଲ, ଯାହା ପୂର୍ବ ପିଢୀମାନଙ୍କଠାରୁ ମିଳିଛି ଓ ଉତ୍ତର ପିଢୀମାନଙ୍କ ପାଇଁ ରହିବ ମଧ୍ୟ । ଏହି ଜୀବିକା ହରେଇବାର ଭୟ, ପ୍ରତିବଦଳରେ କିଛି ନପାଇବାର ଅନିଶ୍ଚିତିତା ପ୍ରକଳ୍ପ ବିରୋଧି ଆନ୍ଦୋଳନର ମୁଖ୍ୟ ପୁଞ୍ଜି । ତାହା ବାଦ, ପ୍ରାକୃତିକ ସମ୍ବଳ ଆଧାରରେ ଗଢିଉଠିଥିବା ଜୀବନଚର୍ଯ୍ୟା, ସଂସ୍କୃତି ଆଦି ଧ୍ୱଂସ ହେବାର ଆଶଙ୍କା ଅନ୍ୟତମ କାରଣ । ଅତୀତରେ ହୋଇଥିବା ଅନେକ ବିକାଶ/ଶିଳ୍ପ ପ୍ରକଳ୍ପର ମର୍ମାନ୍ତିକ ଅନୁଭୂତି (ହୀରାକୁଦ ନଦୀବନ୍ଧ ଯୋଜନା, ରାଉରକେଲା ଇସ୍ପାତ ପ୍ରକଳ୍ପ, ନାଲ୍‌କୋର ଦାମନଯୋଡି ପ୍ରକଳ୍ପ, ଅପର କୋଲାବ ପ୍ରକଳ୍ପ) ଲୋକମାନଙ୍କର ଏପରି ଭାବନାକୁ ମଜଭୁତ କରିଛି ।

ସ୍ଥାନୀୟ ବାସିନ୍ଦାଙ୍କ ଛଡା ଅନେକ ରାଜନୈତିକ ବ୍ୟକ୍ତି ବିଶେଷ ବର୍ତ୍ତମାନର ଶିଳ୍ପାୟନକୁ ବିରୋଧ କରିବା ପଛରେ ମୌଳିକ ରାଜନୈତିକ, ଅର୍ଥନୈତିକ କାରଣମାନ ଅଛି । ସଂକ୍ଷେପରେ କହିଲେ, ପ୍ରଚଳିତ ଶିଳ୍ପାୟନ ଦ୍ୱାରା କିଏ ଲାଭ ପାଉଛି, କିଏ କ୍ଷତି ସହୁଛିର ପ୍ରଶ୍ନ । ଖଣିଜ ଶିଳ୍ପର ସମ୍ରାଜ୍ୟବାଦୀ ଶୋଷଣର ପ୍ରଶ୍ନ, ସର୍ବୋପରି ବିକାଶଧାରାର ପ୍ରଶ୍ନ ଏହି ବିରୋଧ ସହ ଜଡିତ ।

ସବୁଠୁ ବିଡମ୍ବନାର ବିଷୟ ଗଣତାନ୍ତ୍ରିକ ସରକାର (?) ବିରୋଧ କରୁଥିବା ଲୋକଙ୍କର ଭାଷା ଶୁଣିବା ପରିବର୍ତ୍ତେ, ବିରୋଧରୁ ଆସୁଥିବା ପ୍ରଶ୍ନର ଉତ୍ତର ଦେବା ପରିବର୍ତ୍ତେ କିଛିନା କିଛି ଆଳରେ ବନ୍ଧୁକ ଓ ଲାଠି ସାହାଯ୍ୟରେ ସେସବୁର ସମାଧାନ କରିବାକୁ ଚାହୁଁଛି। ଏହା ଗୋପାଳପୁରରେ ଦେଖିଛୁ, କାଶୀପୁର ଓ କଳିଙ୍ଗନଗରରେ ବି ଦେଖୁଛୁ ।

**ପ୍ରଶ୍ନ- ଏହି ଶିଳ୍ପାୟନ ପ୍ରକ୍ରିୟା ଚାଲୁ ନରହିଲେ ଆମେ ବିଶ୍ୱ ମାନଚିତ୍ରରେ ଆମକୁ ବିକଶିତ ଦେଶ ଭାବେ ଉପସ୍ଥାପିତ କରିପାରିବା କି ?**

**ଉତ୍ତର-** ବ୍ରିଟିଶ୍ ଉପନିବେଶ କାଳରେ ଭାରତରୁ କଞ୍ଚାମାଲ ମାଞ୍ଚେଷ୍ଟାର ଯାଇ ସେଠାରୁ ବ୍ୟବହାରଯୋଗ୍ୟ ପଦାର୍ଥ ଉତ୍ପାଦିତ ହୋଇ ପୁଣି ଏଠାକୁ ଆସୁଥିଲା । ସେ ସମୟରେ ଭାରତୀୟ ଜାତୀୟ ଆନ୍ଦୋଳନର ଏହା ଏକ ପ୍ରମୁଖ ବିଷୟ ଥିଲା । ସେଥିପାଇଁ ଭାରତରେ ଶିଳ୍ପାୟନ ହୋଇପାରିଲା ନାହିଁ । ସେହି ସମାନ ପ୍ରକ୍ରିୟାର ନୂତନ ସଂସ୍କରଣ ଏହା ଯେ ଖଣିଜ ପଦାର୍ଥକୁ ଶୋଧନ କରି ବିଦେଶକୁ ଚାଲାଣ କରିବା । ଏହି ପ୍ରକ୍ରିୟା ଚାଲୁ ରହିଲେ ଆମ୍ଭେ କ'ଣ ହେବୁ ତାହା ସ୍ପଷ୍ଟ ।

ଦ୍ୱିତୀୟତଃ, ଏବେ ଯୋଉଗୁଡ଼ିକୁ ବିକଶିତ ଦେଶ କୁହାଯାଉଛି ତା'ର ଐତିହାସିକ ଚେରଟିକୁ ଦେଖିବା କଥା । ଯୁକ୍ତରାଷ୍ଟ୍ର ଆମେରିକା, ଜାପାନ, ଇଉରୋପୀୟ ଦେଶ ସମୂହ ବିଶ୍ୱର ବିଭିନ୍ନ ଦେଶ, ବିଶେଷ କରି ଲାଟିନ ଆମେରିକା ଆଫ୍ରିକା ଓ ଏସିଆ ଦେଶକୁ ଦଶନ୍ଧି ଦଶନ୍ଧି ଧରି ଲୁଣ୍ଠନ କରିଛନ୍ତି । ଆଜି ବି ସେହି ପ୍ରକ୍ରିୟା ବିଭିନ୍ନ ଢଙ୍ଗରେ ଚାଲିଛି । ଇରାକ ଓ ଅଫଗାନିସ୍ଥାନ ଏହି ପ୍ରକ୍ରିୟାର କ୍ରୁର ଓ ନଗ୍ନ ଉଦାହରଣ ।

ଏସବୁ ସତ୍ତ୍ୱେ ବି ଏହା ଦେଖିବାର ବିଷୟ ପ୍ରତ୍ୟେକ ବିକଶିତ ଦେଶର ଏକ ଅବିକଶିତ ଜନଗୋଷ୍ଠୀ ଯେମିତି ଅଛି, ପ୍ରତ୍ୟେକ ଅବିକଶିତ ଦେଶର ସେମିତି ଏକ ବିକଶିତ ଗୋଷ୍ଠି ଅଛି । ପୃଥିବୀର ସବୁଠାରୁ ବିତ୍ତଶାଳୀ, ବଳଶାଳୀ ଦେଶ ଆମେରିକାର ଉଦାହରଣ ନିଆଯାଉ । ଡିସେମ୍ବର ୨୦୦୪ ନ୍ୟୁୟର୍କ ଟାଇମ୍ସ (Newyork Times) ରିପୋର୍ଟ ଅନୁସାରେ ଆମେରିକା ଶିକ୍ଷା ଦୃଷ୍ଟିରୁ ବିଶ୍ୱରେ ୪୯ତମ ରାଷ୍ଟ୍ର ଏବଂ ଯୁକ୍ତରାଷ୍ଟ୍ର ଆମେରିକାର ଶ୍ରମ ବିଭାଗ ଆକଳନ ଅନୁସାରେ ଆମେରିକାର ୨୦% ଲୋକ କାର୍ଯ୍ୟତଃ ନିରକ୍ଷର (functionally illiterate) (କ୍ୟୁବା ଓ ଭେନିଜୁଏଲାରେ ଏହା ମାତ୍ର ୧%) । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର ଆକଳନ ଅନୁସାରେ ସ୍ୱାସ୍ଥ୍ୟସେବା ଦୃଷ୍ଟିରୁ ଆମେରିକା ବିଶ୍ୱରେ ୩୭ତମ ରାଷ୍ଟ୍ର । ଆମେରିକାର [illegible] ଅନୁସାରେ ଆମେରିକାର ୧୩% ଲୋକ ଗରିବ ରେଖା ତଳେ । ଆମେରିକାର ୧୦% ଲୋକ ସେ ଦେଶର ୬୭.୨% ସମ୍ପଦର ମାଲିକ ।

କ୍ୟୁବା ବିକଶିତ ଦେଶର ତାଲିକାରେ ନାହିଁ । କିନ୍ତୁ ଶିକ୍ଷା, ସ୍ୱାସ୍ଥ୍ୟ, ଆର୍ଥିକ ସମାନତା ଦୃଷ୍ଟିରୁ କ୍ୟୁବାର ଜନଗଣ ବେଶ୍ ଉର୍ଦ୍ଧ୍ୱରେ ।

**ପ୍ରଶ୍ନ- ବିନା ଶିଳ୍ପରେ ବିକାଶ ହେବ କି ଓ କିପରି ?**

**ଉତ୍ତର-** ବିକାଶର ପ୍ରଚଳିତ ପରିଭାଷାକୁ ଗ୍ରହଣ କରି ଶିଳ୍ପ ଓ ବିକାଶର ସମ୍ବନ୍ଧକୁ ଦେଖାଯାଉ । ଶିଳ୍ପାୟନ ଦୃଷ୍ଟିରୁ ମହାରାଷ୍ଟ୍ର ଭାରତରେ, ୧ ନମ୍ବର ରାଜ୍ୟ, କେରଳ

୧୪ ନମ୍ବର, ଓଡିଶା ୧୩ ନମ୍ବର (କେରଳ ଉପରେ)[୪] (ଓଡିଶା ସରକାରଙ୍କ ଇକୋନୋମିକ୍ ସର୍ଭେ ରିପୋର୍ଟ ୧୯୯୯-୨୦୦୦) । ମହାରାଷ୍ଟ୍ରରେ ଗରିବୀ ସୀମାରେଖା ତଳେ ଜନସଂଖ୍ୟା ୨୫.୦୨%, କେରଳରେ ୧୨.୭୨%, ଓଡିଶାରେ ୪୭.୧୫%[୫] (ଯୋଜନା କମିଶନ ରିପୋର୍ଟ) ।

ଏବେ ଓଡିଶାର ବିଭିନ୍ନ ଜିଲ୍ଲାମାନଙ୍କୁ ଦେଖାଯାଉ । ଓଡିଶାରେ ଅତିରିକ୍ତ କୋରାପୁଟ ଶିକ୍ଷାୟନ ଦୃଷ୍ଟିରୁ ୮ ନମ୍ବରରେ, ବାଲେଶ୍ୱର ୧୦ ନମ୍ବରରେ । ମାତ୍ର କୋରାପୁଟ ବାଲେଶ୍ୱର ଠାରୁ ବେଶ୍ ପଛୁଆ [୬] (ଓଡିଶା ସରକାରଙ୍କ ଶିକ୍ଷାନୀତି ୧୯୯୬) ।

କେରଳ ଶିକ୍ଷାୟନ ଦୃଷ୍ଟିରୁ ୧୪ ନମ୍ବରରେ ରହିଲେ ବି ବିକାଶ ସୂଚକାଙ୍କ ଦୃଷ୍ଟିରୁ ଭାରତର ୧ ନମ୍ବର ରାଜ୍ୟ । ଶିକ୍ଷା ହେଲେ ଯେ ବିକାଶ (ପ୍ରଚଳିତ ଅର୍ଥରେ ବି) ହବ, ଉପରୋକ୍ତ ତଥ୍ୟରୁ ତାହା ଜଣା ପଡୁନାହିଁ ।

**ପ୍ରଶ୍ନ - ଶିକ୍ଷାର ବିକାଶ ନହେଲେ ବେକାରୀ ସମସ୍ୟା ସମାଧାନ ହେବ କିପରି ?**

**ଉତ୍ତର** - ପ୍ରଶ୍ନଟିର ଦ୍ୱିତୀୟ ଭାଗ "ବେକାରୀ ସମସ୍ୟା" ବିଷୟରେ ଓଡିଶା ସରକାରଙ୍କର ମନ୍ତବ୍ୟ ଓ ତଥ୍ୟ କ'ଣ କହୁଛି ଦେଖାଯାଉ । ଓଡିଶା ସରକାରଙ୍କ ଅର୍ଥନୈତିକ ସର୍ଭେ (Economic Survey ୨୦୦୫-୦୬)ରେ ଉଲ୍ଲେଖ ଅଛି "......... But the present ongoing reform process of the State Govt. to downsize the State Govt. establishment as well as PSUS has severely affected the placement initiative (ଦ୍ରଷ୍ଟବ୍ୟ - Man power & Employment Chapter) ଓଡିଆରେ କହିଲେ ସଂସ୍କାର କାର୍ଯ୍ୟକ୍ରମ ହେତୁ ରାଜ୍ୟସରକାରଙ୍କ ସଂସ୍ଥା ତଥା ସାର୍ବଜନୀନ କ୍ଷେତ୍ରରେ ରୋଜଗାର ସମ୍ଭାବନା ଗୁରୁତର ଭାବେ ପ୍ରଭାବିତ ହୋଇଛି । ଏବେ ଦେଖାଯାଉ, Employment Exchangର ମାନଙ୍କରେ କେତେ ପ୍ରାର୍ଥୀ ନିଜକୁ ପଞ୍ଜିକୃତ କରିଛନ୍ତି ଓ କେତେ ଚାକିରୀ ସରକାରୀ କ୍ଷେତ୍ରରେ ବାହାରିଛି ।

| ବର୍ଷ | ସେହି ବର୍ଷରେ ପଞ୍ଜୀକୃତ ପ୍ରାର୍ଥୀଙ୍କ ସଂଖ୍ୟା | ଖାଲି ପଦବୀ ବିଜ୍ଞପିତ |
|---|---|---|
| ୨୦୦୦ | ୧୬୪୫୭୭ | ୩୧୨୧ |
| ୨୦୦୧ | ୧୩୦୫୮୬ | ୨୬୨୦ |
| ୨୦୦୨ | ୧୪୧୨୩୪ | ୨୨୩୯ |
| ୨୦୦୩ | ୧୬୮୮୨୪ | ୨୩୨୫ |
| ୨୦୦୪ | ୨୬୭୩୩୭ | ୧୭୬୦ |

(*Source : Economic Survey 2005-06, Govt. of Orissa*)

ସରକାରୀ କ୍ଷେତ୍ରରେ ଯେ ଚାକିରୀ ନାହିଁ ଉପରୋକ୍ତ ତଥ୍ୟରୁ ସ୍ପଷ୍ଟ ଲକ୍ଷ୍ୟ କରାଯାଇ ପାରିବ । ଓଡିଶାରେ ୨୦୦୬-୦୭ ମସିହା ସୁଦ୍ଧା ୯ ଲକ୍ଷ ୭୪ ହଜାର ବେକାର ହେବେ ।

ସରକାରଙ୍କ ତରଫରୁ ବାରମ୍ବାର ଘୋଷଣା କରାଯାଉଛି ଖଣି ଖୋଳି ଶିଳ୍ପ ସ୍ଥାପନ କଲେ ବେକାରୀ ସମସ୍ୟା ସମାଧାନ ହେବ । ଖଣି କ୍ଷେତ୍ରରେ ରୋଜଗାର ସମ୍ବନ୍ଧୀୟ ତଥ୍ୟକୁ ଦେଖାଯାଉ । ୨୦୦୦-୦୧ ମସିହାରେ, ୫୨୯୩୭ ନିଯୁକ୍ତି ଥିବାବେଳେ ୨୦୦୧-୦୨ ରେ ୪୫୧୩୫ ଜଣ, ୨୦୦୨-୦୩ରେ ୪୪୧୬୭ ଜଣ ଏବଂ ୨୦୦୩-୦୪ରେ ୪୩୭୪୩ ଜଣ [୭] (ଓଡିଶା ସରକାରଙ୍କ ଇକୋନୋମିକ୍ ସର୍ଭେ ରିପୋର୍ଟ ୧୯୯୯-୨୦୦୦) । ଅର୍ଥାତ୍ ଖଣି କ୍ଷେତ୍ରରେ ପ୍ରତିବର୍ଷ ନିଯୁକ୍ତି ହ୍ରାସ ହୋଇଚାଲିଛି । ଓଡିଶା ସରକାର ଅର୍ଥନୈତିକ ସର୍ଭେରେ କହିଛନ୍ତି ଆଧୁନିକ ପ୍ରଯୁକ୍ତି ପ୍ରୟୋଗ ହେତୁ ଏହା ହେଉଛି ।

୯ ଲକ୍ଷ ୭୪ ହଜାର ବେକାର ଥିବା ସମୟରେ (ଏହା ଅଣସରକାରୀ ଭାଷାରେ ୧୪ ଲକ୍ଷ) ସରକାର ଯେଉଁସବୁ ଶିଳ୍ପ ସ୍ଥାପନା ପାଇଁ ଚୁକ୍ତିପତ୍ର ସ୍ୱାକ୍ଷରିତ କରିଛନ୍ତି ସେଗୁଡିକର ରୋଜଗାର ସମ୍ଭାବନା ବିଷୟରେ ତଥ୍ୟ କ'ଣ କହୁଛି ଦେଖାଯାଉ ।

| ପ୍ରକଳ୍ପର ନାମ | ରୋଜଗାର ସମ୍ଭାବନା | ପ୍ରକଳ୍ପ ଖର୍ଚ୍ଚ |
|---|---|---|
| ବେଦାନ୍ତ ଆଲୁମିନା, ଲାଞ୍ଜିଗଡ | ୨୫୦ - ସ୍ଥାୟୀ<br>୫୦୦ - ଅସ୍ଥାୟୀ | ୪୫୦୦ କୋଟି |
| ଉତ୍କଳ ଆଲୁମିନା, କାଶୀପୁର | *୧୫୦୦ ସ୍ଥାୟୀ<br>ଅସ୍ଥାୟୀ | ୪୫୦୦ କୋଟି |

*ଉତ୍କଳ ଆଲୁମିନା କମ୍ପାନୀ ଏହା କେବଳ ମୁହଁରେ କହୁଛି, କୌଣସି ଲିଖିତ ପ୍ରତିଶ୍ରୁତି ଦେଇନାହିଁ ।

| | | |
|---|---|---|
| ପୋସ୍କୋ ଇସ୍ପାତ ପ୍ରକଳ୍ପ, ପାରାଦ୍ୱୀପ | *୧୩୦୦୦ - ସ୍ଥାୟୀ<br>*୩୫୦୦୦ - ଅସ୍ଥାୟୀ | ୫୧୦୦୦ କୋଟି |

*୨୨ ଜୁନ୍, ୨୦୦୫ ରେ ପୋସ୍କୋ ସହ ଚୁକ୍ତିପତ୍ର ସ୍ୱାକ୍ଷରିତ ଅବସରରେ ମୁଖ୍ୟମନ୍ତ୍ରୀ ଦେଇଥିବା ବକ୍ତବ୍ୟରୁ ଗୃହୀତ ।

ପୋସ୍କୋ ସହ ସ୍ୱାକ୍ଷରିତ ହୋଇଥିବା ଚୁକ୍ତିପତ୍ରରେ ରୋଜଗାର ସମ୍ବନ୍ଧରେ କୌଣସି ଜାଗାରେ ଏହା ଉଲ୍ଲେଖ ନାହିଁ । କେବଳ ଏତିକି ଲେଖାଯାଇଛି "In terms of employment, preference will be given to the people of Orissa subject to need and their possessing the necessary qualifications. The company will make every effort to

improve their skill levels" (Reference : 19 General Causes (i) (ii). ଅତଏବ ମୁଖ୍ୟ ପ୍ରଶ୍ନ ଉଠେ ମୁଖ୍ୟମନ୍ତ୍ରୀ ଏ ତଥ୍ୟ ପାଇଲେ କେଉଁଠୁ ? କେଉଁ ଆଧାରକୁ ଭିତ୍ତିକରି ଏହା କୁହାଗଲା ?

ଧରି ନିଆଯାଉ ଏ ସମସ୍ତ ତଥ୍ୟ ସତ୍ୟ । ଏକଥା ବି ବିଚାର କରିବା ବିଷୟ ଏହିସବୁ ପ୍ରକଳ୍ପ ଦ୍ୱାରା କେତେ ଲୋକଙ୍କର ରୋଜଗାର ଧ୍ୱଂସ ହେବ ।

ବେଦାନ୍ତ ଆଲୁମିନାର ପ୍ରକଳ୍ପ ରିପୋର୍ଟ ଅନୁସାରେ ୬୦ ପରିବାର ସଂପୂର୍ଣ୍ଣ ଉଚ୍ଛେଦ ହେବେ । କେବଳ ପ୍ଲାଣ୍ଟ ପାଇଁ ୧୨ ଖଣ୍ଡ ଗାଁର ୩୦୨ ପରିବାର ଜମି (ଯାହାକି ସେମାନଙ୍କର ରୋଜଗାରର ଆଧାର) ହରେଇବେ । ନିୟମଗିରିରୁ ଖଣି ଖୋଳିବା ବାବଦର ପ୍ରକଳ୍ପ ରିପୋର୍ଟ ସଂପୂର୍ଣ୍ଣ ନିରବ । ନିୟମଗିରି ପାହାଡ ସନ୍ଧିରେ ପ୍ରାୟ ୪୦ ଖଣ୍ଡ ଗାଁର ୧୫୦୦ ଲୋକ, ମୁଖ୍ୟତଃ ଡଙ୍ଗରିଆ କନ୍ଧ ସମ୍ପ୍ରଦାୟ ବାସ କରୁଛନ୍ତି । ସେମାନେ ବି ଏହା ଦ୍ୱାରା କ୍ଷତିଗ୍ରସ୍ତ ହେବେ ।

ନିୟମଗିରିର ଘନ ଜଙ୍ଗଲ, ବଂଶଧାରା ଓ ନାଗାବଳୀ ନଦୀ ସବୁ ଧ୍ୱଂସ ହେବ । ଏ ସବୁର ଆର୍ଥିକ ମୂଲ୍ୟ ଆକଳନ କଲେ ବେଦାନ୍ତ ପ୍ରକଳ୍ପ ରୋଜଗାର ସୃଷ୍ଟି କରୁଛି ନାଁ ଆହୁରି ବେକାରୀ ସୃଷ୍ଟି କରୁଛି ତାହା ବିଚାର୍ଯ୍ୟ ।

ଉତ୍କଳ ଆଲୁମିନା ପ୍ରକଳ୍ପ : କଂପାନୀ ପ୍ରକଳ୍ପ ରିପୋର୍ଟ ଅନୁସାରେ ୧୪୮ ପରିବାର (୩ଟି ଗାଁ) ସଂପୂର୍ଣ୍ଣ ଉଚ୍ଛେଦ ହେବେ । ୨୦୦୫ ଲୋକ ପ୍ରକଳ୍ପ ପାଇଁ ଜମି ହରେଇବେ । ଖଣି ପାଇଁ ୨୪ ଟି ଗାଁ ଆଂଶିକ ପ୍ରଭାବିତ ହେବେ ।

ପୋସ୍କୋ ଇସ୍ପାତ ପ୍ରକଳ୍ପ : ୩ଟି ପଞ୍ଚାୟତର ୩୦ ହଜାର ଲୋକେ କ୍ଷତିଗ୍ରସ୍ତ ହେବେ ।

ଏସବୁ ପ୍ରକଳ୍ପରୁ ସୃଷ୍ଟି ହେଉଥିବା ରୋଜଗାରର ପରିମାଣ ଓ ପ୍ରକଳ୍ପ ସୃଷ୍ଟି କରୁଥିବା ବେରୋଜଗାରର ପରିମାଣକୁ ଆକଳନ କଲେ ଆମେ କ'ଣ କହିପାରିବୁ ଏ ଶିଳ୍ପାୟନ ଦ୍ୱାରା ବେରୋଜଗାରୀ ସମସ୍ୟା ସମାଧାନ ହେବ ?

**ପ୍ରଶ୍ନ - ଖଣି ଯଦି ଶିଳ୍ପ କ୍ଷେତ୍ରରେ ବିନିଯୋଗ ନହେବ, ତା'ହେଲେ କେବଳ ମାଟିତଳେ ରହିଲେ କ'ଣ ହେବ ?**

**ଉତ୍ତର** - ଓଡିଶାର ଖଣିଜ ସମ୍ପଦକୁ ବାସ୍ତବ ଶିଳ୍ପ ପାଇଁ ବ୍ୟବହାର ନକରି କେବଳ ଯେ ବିଦେଶକୁ ଶୋଧନ କରି ପଠାଯାଉଛି ତାହା ଆଗରୁ ଆଲୋଚନା ହୋଇଛି । ତା'ର ପୁନରାବୃତ୍ତି ଆବଶ୍ୟକ ନାହିଁ । କିନ୍ତୁ ଆମେ ଏକଥା ବି ଭୁଲିବା ଉଚିତ୍ ନୁହେଁ ଯୋଉ ମାଟିତଳେ ଖଣି ଅଛି, ସେହି ମାଟି ଉପରେ ଯୁଗ ଯୁଗ ଧରି ଜନବସତି ଅଛି, ଚାଷ ଜମି ଅଛି, ଜଙ୍ଗଲ ଅଛି, ପାଣି ଅଛି । ସେସବୁକୁ ନେଇ ଏକ ବିଶାଳ ଜନଗୋଷ୍ଠୀ ଜୀବିକା ଓ ଜୀବନ ନିର୍ବାହ କରୁଛି ।

ଓଡିଶାକୁ ଲକ୍ଷ୍ୟ କଲେ ଦେଖାଯିବ କୋରାପୁଟରୁ ମୟୁରଭଞ୍ଜ (ଯାହା ମୁଖ୍ୟ ଖଣି ଅଂଚଳ) ପର୍ଯ୍ୟନ୍ତ, ସେ ଯାଗାରେ ଓଡିଶାର ଆଦିବାସୀ ସମୁଦାୟ ବାସ କରୁଛନ୍ତି । ଖଣି ଖୋଳିବା ଅର୍ଥ ସେମାନଙ୍କୁ ସେ ସ୍ଥାନରେ କବର ଦେବା ।

ଦ୍ୱିତୀୟ କଥା, ଖଣିଜ ସଂପଦ ହଜାର ହଜାର ବର୍ଷର ପ୍ରାକୃତିକ କ୍ରିୟା ପ୍ରକ୍ରିୟା ଦେଇ ତିଆରି ହୁଏ । ସେ ସବୁ ଉପରେ କେବଳ ଗୋଟିଏ ପିଢୀର ଅଧିକାର ଅଛି ବୋଲି ଆମେ କହିବା କେମିତି ? ଗାଉଁଲି ଉଦାହରଣଟିଏ ନିଆଯାଉ, ଜଣେ ବାପା ଉତ୍ତରାଧିକାର ସୂତ୍ରରେ ତା' ବାପାଙ୍କଠାରୁ ସମ୍ପତ୍ତି ପାଇଛି । ସେ ସମ୍ପତ୍ତି ସିଏ ଯଦି ତା ପୁଅମାନଙ୍କ ପାଇଁ ନରଖି ବରବାଦ କରେ ଆମେ ସେ ବାପକୁ କହୁ କ'ଣ ? ଆମେ କ'ଣ ଏହା ଭାବୁନାହୁଁ ଯେ ସେ ବାପା ଜଣକ ଯାହା କଲେ ଠିକ୍ କଲେ ନାହିଁ ?

**ପ୍ରଶ୍ନ- ଶିଳ୍ପର ପ୍ରତିଷ୍ଠା କରି ଦେଶର ବିକାଶ କରିବା ପାଇଁ ଯଦି କିଛି ଲୋକଙ୍କୁ କିଛି ତ୍ୟାଗ ସ୍ୱୀକାର କରିବାକୁ ପଡେ, ଦେଶର ସ୍ୱାର୍ଥ ଦୃଷ୍ଟିରୁ ଏହା ଭଲ ହେବ କି ?**

**ଉତ୍ତର** - ୧୯୪୮ରେ ହୀରାକୁଦ ନଦୀବନ୍ଧ ଦ୍ୱାରା ବିସ୍ଥାପିତ ହେବାକୁ ଥିବା ଗାଁ ଲୋକଙ୍କ ଉଦ୍ଦେଶ୍ୟରେ ନେହେରୁ କହିଥିଲେ "ଯଦି ତୁମକୁ କଷ୍ଟ ଭୋଗିବାକୁ ପଡେ ତାହେଲେ ଦେଶର ସ୍ୱାର୍ଥ ପାଇଁ ସେ କଷ୍ଟ ତୁମକୁ ଭୋଗିବାକୁ ପଡିବ" । ଏହି କଥା ଆଜିପର୍ଯ୍ୟନ୍ତ ବାରବାର କୁହା ଚାଲିଛି । ଯେଉଁମାନେ ତ୍ୟାଗ ସ୍ୱୀକାର କରିଛନ୍ତି/କରୁଛନ୍ତି ସେମାନେ କ'ଣ ଏ ଦେଶର ଲୋକ ନୁହଁନ୍ତି ? ସେମାନଙ୍କ ଦାୟିତ୍ୱ ନବା କ'ଣ ଦେଶର ଦାୟିତ୍ୱ ନୁହେଁ ? ତେବେ ଆଜିପର୍ଯ୍ୟନ୍ତ ହୀରାକୁଦର ବିସ୍ଥାପିତମାନେ ଥଇଥାନ ହୋଇନାହାଁନ୍ତି କାହିଁକି ?

ତ୍ୟାଗ ସ୍ୱୀକାର କରିଥିବା ମଣିଷମାନଙ୍କ ମଧ୍ୟରୁ ଆଦିବାସୀ ଓ ଦଳିତ ହେଲେ ୪୦% (Development Induced Displacement - Walter Fernades and Md. Asif) । ଇଏ ତ ହେଲା ସର୍ବଭାରତୀୟ ହିସାବ । ଓଡିଶାରେ ଏହି ସଂଖ୍ୟା ଆହୁରି ଅଧିକ । ୪୦.୩୬% ଆଦିବାସୀ ଓ ୧୧.୬୪% ଦଳିତ । ସମାଜରେ ଯେଉମାନେ ସବୁଠୁଁ ଅବହେଳିତ ଓ ବଂଚିତ, ସେମାନଙ୍କ ପ୍ରତି ତ୍ୟାଗ ସ୍ୱୀକାର କରିବାର ଆହ୍ୱାନ କାହିଁକି ? ଏହି ତ୍ୟାଗର ଫଳ ଯେଉଁମାନେ ପାଇଛନ୍ତି ସେମାନଙ୍କ ପ୍ରତି ଏ ଆହ୍ୱାନ କେବେ ହେଉନାହିଁ କାହିଁକି ? ଶାସନ ଗାଦିରେ ଯେଉଁମାନେ ଅଛନ୍ତି ସେମାନେ କାହିଁକି ତ୍ୟାଗ ସ୍ୱୀକାର କରୁନାହାଁନ୍ତି ? କିଛି ଦିନ ତଳେ ସାଂସଦମାନେ ସେମାନଙ୍କର ଭତ୍ତା, ଟେଲିଫୋନ ସୁବିଧା, ବିଦେଶଗସ୍ତ ସୁବିଧା ବଢେଇଲେ । ଏହା କ'ଣ ଦେଶର ସ୍ୱାର୍ଥ ପାଇଁ କଲେ ?

**ପ୍ରଶ୍ନ - ଉପଯୁକ୍ତ ଥଇଥାନ ସହ ଶିଳ୍ପ ହେଲେ ଅସୁବିଧା କେଉଁଠି ?**

**ଉତ୍ତର** - "ଉପଯୁକ୍ତ ଥଇଥାନ" ର ପରିଭାଷା କ'ଣ ସେ ବିତର୍କକୁ ନଯାଇ ବିସ୍ଥାପନ-ଥଇଥାନର ଆକଳନ ଦେଖାଯାଉ । ଯୋଜନା ଆୟୋଗର ପୂର୍ବତନ ସଚିବ ଶ୍ରୀ ଏନ୍.ସି. ସାକ୍ସେନା ଏକ ବେସରକାରୀ ଭାଷଣରେ କହିଥିଲେ । (ଅନ୍ବେଷାରେ ପ୍ରକାଶିତ ଅରୁନ୍ଧତି ରାୟଙ୍କ "ନର୍ମଦା ନଦୀବନ୍ଧ ଯୋଜନା" ପ୍ରବନ୍ଧରେ ଉଲ୍ଲିଖିତ) ଭାରତରେ ପ୍ରାୟ ୫କୋଟି ଲୋକ ବିସ୍ଥାପିତ ହେଉଛନ୍ତି, ତହିଁରୁ ୪କୋଟି କେବଳ ନଦୀବନ୍ଧ ଯୋଜନା ଦ୍ୱାରା ଓଡିଶାରେ, ୧୯୫୧-୧୯୯୫ ମଧ୍ୟରେ, ବିଭିନ୍ନ ପ୍ରକଳ୍ପ ଦ୍ୱାରା ବିସ୍ଥାପିତ/ପ୍ରଭାବିତ ହୋଇଛନ୍ତି ୧୪,୬୫,୯୦୯ ଜଣ । ସେଥିମଧ୍ୟରୁ କେବଳ ବିସ୍ଥାପିତ ହୋଇଛନ୍ତି ୫,୪୬,୭୯୪ ଜଣ । ତହିଁରୁ ଥଇଥାନ ହୋଇଛନ୍ତି ମାତ୍ର ୧,୯୨,୮୪୦ ଜଣ (୩୫.୨୭%) ଅର୍ଥାତ୍ ୩,୫୩,୯୫୪ (୬୪.୭୩%) ଲୋକ ଥଇଥାନ ହୋଇ ନାହାଁନ୍ତି । (ସ୍ରୋତ - Development Induced Displacement in Orissa 1991-1995, Walter Fernardes & Md. Asif)

ଆଜି ପର୍ଯ୍ୟନ୍ତ ହୀରାକୁଦ ଓ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟର ବିସ୍ଥାପିତମାନେ ଥଇଥାନ ହୋଇନାହାଁନ୍ତି ! (କଳିଙ୍ଗନଗର ଗୁଳିକାଣ୍ଡ ପରେ ଖୋଦ ଓଡିଶା ସରକାର ଏହା ସ୍ୱୀକାର କରି ସେମାନଙ୍କର ଥଇଥାନ ପାଇଁ କେନ୍ଦ୍ର ସରକାରଙ୍କୁ ଚିଠି ଲେଖିଛନ୍ତି ଯେହେତୁ ସେଗୁଡିକ କେନ୍ଦ୍ର ସରକାରଙ୍କର ପ୍ରକଳ୍ପ ।

ଆଜି ଯେଉଁମାନେ ଥଇଥାନ ସହ ଶିଳ୍ପପାଇଁ ଓକିଲାତି କରୁଛନ୍ତି ସେମାନଙ୍କର କ'ଣ ଏହି ବିଷୟକୁ ନଜର ଅନ୍ଦାଜ କରିବା ବୌଦ୍ଧିକ ଅସାଧୁତା ନୁହେଁ ?

**ପ୍ରଶ୍ନ- ଦ୍ରୁତ ଶିଳ୍ପାୟନର ବିକାଶଧାରାରେ ଆମ ଦେଶକୁ ଯେଉଁ ପୁଞ୍ଜି ଓ ପ୍ରଯୁକ୍ତି ବିଦ୍ୟା ଆସୁଛି ତାହା ଆମ ଦେଶର ସାମଗ୍ରିକ ଉନ୍ନତିରେ ସହାୟକ ହେଉନାହିଁ କି ? ଶିଳ୍ପାୟନ ନହେଲେ ଏହି ପୁଞ୍ଜି ଓ ପ୍ରଯୁକ୍ତିର ଆଗମନ ବନ୍ଦ ହୋଇଯିବ ନାହିଁକି ?**

**ଉତ୍ତର** - ଅର୍ଥନୀତିର ଜଟିଳତାକୁ ନଯାଇ ସାଧାରଣ ଜ୍ଞାନ ଖଟେଇ ଏତିକି ବୁଝିହେବ ଯେ ଯାହା ଆସୁଛି, ତାହା ମାଗଣା ଆସୁନି । ଯିଏ ଦଉଚି ସିଏ ମାଗଣା ଦେଉନି । ମହାଜନ ଘରୁ ଧାର ଆଣୁଥିବା ଯେକୌଣସି ଗାଁଉଲି ଲୋକ ଏକଥା ମର୍ମେ ମର୍ମେ ବୁଝିଛି । ଉତ୍କଳ ଆଲୁମିନା ଓ ବେଦାନ୍ତ କମ୍ପାନୀର ଉଦାହରଣ ନିଆଯାଉ । ଉଭୟ କମ୍ପାନୀ ବକ୍ସାଇଟ୍‌ରୁ ଆଲୁମିନା ତିଆରି କରି ବିଦେଶକୁ ରପ୍ତାନୀ କରିବେ । ସେମାନେ ପାଇବେ କେତେ ଓ ଭାରତ ସରକାର ପାଇବେ କେତେ ତା'ର ହିସାବ ଦରକାର ।

ଗୋଟିଏ ଟନ୍ ଆଲୁମିନାର ଆନ୍ତର୍ଜାତିକ ବଜାରରେ ମୂଲ୍ୟ ୫୦୦

ଆମେରିକୀୟ ଡଲାର । ଟଙ୍କାରେ ହିସାବ କଲେ : ୫୦୦ ଘ ୫୦ = ୨୫,୦୦୦ ଟଙ୍କା । ଅର୍ଥାତ୍ ୧ ଟନ୍ ଆଲୁମିନା ସେମାନେ ବିକ୍ରିଲେ ପାଇବେ ୨୫,୦୦୦ ଟଙ୍କା ଏବଂ ଭାରତ ସରକାର ରୟାଲିଟି ବାବଦରେ ପାଇବେ ମାତ୍ର ୬୦ । ୧ ଟନ୍ ବକ୍ସାଇଟ୍ ପାଇଁ ପାଇବେ ୬୪ ଟଙ୍କା । ଉତ୍କଳ ଆଲୁମିନା ୧୯୦ ମିଲିୟନ ଟନ୍ ବକ୍ସାଇଟ୍ ୩୦-୩୫ ବର୍ଷରେ ଶୋଧନ କରି ବାହାର କରିବ ୬୩ ମିଲିୟନ ଟନ୍ ଆଲୁମିନା । ବେଦାନ୍ତ କମ୍ପାନୀ ୭୬ ମିଲିୟନ ଟନ୍ (୨୨-୨୩ ଡଲାର) ବକ୍ସାଇଟ୍‌ରୁ ୨୫ ମିଲିୟନ ଟନ୍ ଆଲୁମିନା ଉତ୍ପାଦନ କରିବ ।

ଅତଏବ ଉତ୍କଳ ଆଲୁମିନା ୩୦-୩୫ ବର୍ଷରେ ପାଇବ ୧୫୭୬୦୦୦ ନିୟୁତ ଟଙ୍କା ଯେତେବେଳେ କି ପ୍ରକଳ୍ପରେ ପୁଞ୍ଜି ଲଗାଇବ ୪୫୦୦ କୋଟି ଟଙ୍କା । ସରକାର ପାଇବେ ୧୨୧୬୦ ନିୟୁତ ଟଙ୍କା । ସେହିଭଳି ବେଦାନ୍ତ ପାଇବ ୬୨୫୦୦୦ ନିୟୁତ ଟଙ୍କା । ଯେତେବେଳେ ପୁଞ୍ଜି ଲଗାହୋଇଛି ୪୫୦୦ କୋଟି ଟଙ୍କା । ସରକାର ପାଇବେ ୪୮୬୪ ନିୟୁତ ଟଙ୍କା ।

ଉପରୋକ୍ତ ହିସାବରୁ ବୁଝିହେବ ଏ ପ୍ରକାର ପୁଞ୍ଜି ଆସିବା ଦ୍ୱାରା କାହାର ଲାଭ ହେଉଛି ।

ଦ୍ୱିତୀୟ କଥା ପ୍ରଯୁକ୍ତ ବିଦ୍ୟା । ଉନ୍ନତ ପ୍ରଯୁକ୍ତି ବିଦ୍ୟା ଫଳରେ ଯେ ନିଯୁକ୍ତି ହ୍ରାସ ପାଇଛି, ଏକଥା ସରକାର ଖୋଦ ମାନୁଛନ୍ତି । କୌଣସି ଦେଶର ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ ତା'ର ଆବଶ୍ୟକତା ଉପରେ ନିର୍ଭର କରେ । ଲୋକଙ୍କ ହାତକୁ କାମ ଯୋଗେଇବା ପରିବର୍ତ୍ତେ ପ୍ରଯୁକ୍ତି ଯଦି କାମ ଛଡ଼େଇ ନବ ସେଥିରେ ଲାଭ କ'ଣ

**ପ୍ରଶ୍ନ- ଶିଳ୍ପ ପ୍ରତିଷ୍ଠା ହେବା ଦ୍ୱାରା ରାସ୍ତାଘାଟ ଆଦି ଭିତ୍ତିଭୂମି (infrastructure) ର ଯେଉଁ ପ୍ରକାର ବିକାଶ ହେଉଛି, ତାହାଦ୍ୱାରା ସାଧାରଣ ଲୋକମାନେ ଉପକୃତ ହେଉଛନ୍ତି ବୋଲି ମନେ ହେଉନାହିଁ କି ?**

**ଉତ୍ତର -** ବିଦ୍ରୋହ ଦମନ ପାଇଁ ବ୍ରିଟିଶ୍ ସାମ୍ରାଜ୍ୟବାଦ କାଳରେ ଭାରତରେ ରେଲୱେ ବିସ୍ତାର ହୋଇଥିଲା । ଅସଲ ଉଦ୍ଦେଶ୍ୟ ଥିଲା ବ୍ରିଟିଶ୍ ଫୌଜକୁ ବିଭିନ୍ନ ସ୍ଥାନକୁ ପ୍ରେରଣ କରିବା, ଦ୍ୱିତୀୟତଃ, କଞ୍ଚାମାଲର ପରିବହନ । ସିପାହୀ ବିଦ୍ରୋହ ସମୟରୁ ଭାରତୀୟ ଜାତୀୟ ଆନ୍ଦୋଳନକୁ ଲକ୍ଷ୍ୟ କଲେ ଦେଖାଯିବ ଆନ୍ଦୋଳନକାରୀମାନେ ବହୁ ସମୟରେ ରେଳଧାରଣା ନଷ୍ଟ କରିଛନ୍ତି । କହିବାର ଉଦ୍ଦେଶ୍ୟ ସେମାନଙ୍କ ଆଖିରେ ଶୋଷଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ଏ ରାସ୍ତାର ଅସଲ ଉଦ୍ଦେଶ୍ୟ ଥିଲା ।

ସ୍ୱାଧିନତା ପରବର୍ତ୍ତୀ ଘଟଣାକୁ ଦେଖିଲେ ସେମିତି ଅନୁଭବ ହୁଏ । ୭୦ ଦଶକରେ ନକ୍ସଲ ଆନ୍ଦୋଳନ କୋରାପୁଟ ଜିଲ୍ଲାରେ ଯେତେବେଳେ ଆରମ୍ଭ

ହେଲା, ସରକାର ସେ ଅଂଚଳରେ ରାସ୍ତାଘାଟ ନିର୍ମାଣ ପାଇଁ ତୁରନ୍ତ ଲାଗିପଡିଲେ । ଉଲ୍ଲେଖଯୋଗ୍ୟ, ସେତେଦିନ ପର୍ଯ୍ୟନ୍ତ ସେ ଅଂଚଳକୁ ଗମନାଗମନର ସୁବିଧା ନଥିଲା ଯଦିଓ ସେ ଅଞ୍ଚଳରେ ବାସ କରୁଥିବା ଲୋକେ ଓଡିଶାରେ ଥିଲେ ।

ସଦ୍ୟତମ ଉଦାହରଣଟିଏ ଦେଖାଯାଉ । ୧୯୮୮ ମସିହାରେ ରାୟଗଡାରୁ କାଶୀପୁର ଅଂଚଳକୁ ପିଚୁ ରାସ୍ତା ନିର୍ମାଣ ଆରମ୍ଭ ହେଲା । ୧୯୯୦-୯୨ ବେଳକୁ ଉତ୍କଳ ଆଲୁମିନା କାଶୀପୁରରେ ହାଜର । ଲୋକେ ସେତେବେଳେ ବୁଝିଲେ ଏ ରାସ୍ତା କମ୍ପାନୀ ପାଇଁ ତିଆରି ହୋଇଛି , ଆମପାଇଁ ନୁହେଁ । ଡୁବୁରୀ - ପାରାଦ୍ୱୀପ ରାସ୍ତା ପୋସ୍କୋ ପାଇଁ ନାଁ ସେ ଅଞ୍ଚଳର ଲୋକଙ୍କ ପାଇଁ ଏହା ସମସ୍ତେ ଜାଣନ୍ତି ।

ଓଡିଶାର ୮୬ଭାଗ ଲୋକ ଗାଁରେ ରହନ୍ତି । ଓଡିଶାର ସାଧାରଣ ଚାଷୀଟିଏ, ଜଙ୍ଗଲରେ ରହୁଥିବା ଆଦିବାସୀ ଜଣଙ୍କର କି କାମରେ ଆସିବ ଚାରିଲେନ୍ ରାଜରାସ୍ତା ?

**ପ୍ରଶ୍ନ- ବର୍ତ୍ତମାନର ଜଗତୀକରଣ ଧାରାରେ ଆସୁଥିବା ବିଦେଶୀ ଶିଳ୍ପ ସଂସ୍ଥାମାନଙ୍କୁ ଆମେ ଯଦି ସୁଯୋଗ ନଦେବା ତା'ହେଲେ ବିଶ୍ୱ ପଞ୍ଚାୟତର ନିୟମ ଭାଙ୍ଗି ଆମେ ମନମୁଖି ବ୍ୟବହାର କରୁଥିବା ଭଳି ଜଣାଯିବ ନାହିଁ କି ? ଏବଂ ଏହା ଯୋଗୁଁ ଆମେ ବିଶ୍ୱର ସହାୟତା ହରାଇବାର ଭୟ ନାହିଁ କି ?**

**ଉତ୍ତର -** ଯାହାକୁ ବିଶ୍ୱ ପଞ୍ଚାୟତ ବୋଲି କୁହାଯାଇଛି, ବାସ୍ତବ ଘଟଣା ଗୁଡିକୁ ଦେଖିଲେ ଜଣାପଡେ ବାସ୍ତବରେ ତାହା ଆମେରିକା ଓ ତା ଚାମଚା ଦେଶମାନଙ୍କର ଏକ ସଖି କଣ୍ଢେଇ । ବିଶ୍ୱ ବଞ୍ଚାୟତ ନାଁରେ ସେମାନେ ହିଁ ମନମୁଖି କାରବାର ଚଳେଇଛନ୍ତି । ପାଲେଷ୍ଟାଇନ୍ ଓ ଇରାକ ଘଟଣାରୁ କ'ଣ ଏହା ସ୍ପଷ୍ଟ ନୁହେଁ ?

ଦ୍ୱିତୀୟତଃ, ଏହି ତଥାକଥିତ ବିଶ୍ୱ ପଞ୍ଚାୟତ ଦ୍ୱାରା ବାସନ୍ଦ ହୋଇ ମଧ୍ୟ ମର୍ଯ୍ୟାଦା ସହ ବଞ୍ଚୁଥିବା ଦେଶ ଅଚନ୍ତି । କ୍ୟୁବା ଓ ଇରାନକୁ ଉଦାହରଣ ଭାବେ ନିଆଯାଇ ପାରେ । କ୍ୟୁବା ଭଳି ଏକ ଛୋଟ ଦେଶ ଯଦି ଆମେରିକା ଓ ଇଉରୋପ (ଯେଉଁମାନଙ୍କ କବ୍‌ଜାରେ ଅଛି ବିଶ୍ୱ ପଞ୍ଚାୟତ) ଦାଦାଗିରିକୁ ସାମନା କରିପାରୁଛି, ତେବେ ଭାରତ ଭଳି ୧୦୦ କୋଟି ଜନସଂଖ୍ୟା ବିଶିଷ୍ଟ ଦେଶର ଅସୁବିଧା କେଉଁଠି ? ଏହା ଗୋଲାମୀ ମାନସିକତା ନୁହଁ କି?

**ପ୍ରଶ୍ନ- ବୃହତ୍ତ ଶିଳ୍ପ ପ୍ରତିଷ୍ଠା ନହେଲେ ଆମଦାନୀ ଓ ରପ୍ତାନୀ ନେଇ ଆମର ଆନ୍ତର୍ଜାତିୟ ସଂପର୍କ ପ୍ରଭାବିତ ହେବ ନାହିଁ କି ?**

**ଉତ୍ତର -** ଭାରତ ରପ୍ତାନୀ କରୁଥିବା ପଦାର୍ଥର ତାଲିକା ଦେଖିଲେ ଏହା ସ୍ପଷ୍ଟ ହୋଇଯିବ ଯେ ବୃହତ୍ତ ଶିଳ୍ପ ସହ ଏହାର ବିଶେଷ ସଂପର୍କ ନାହିଁ । କଞ୍ଚା ଖଣିଜ ପଦାର୍ଥ (ଲୁହାପଥର, ମାଙ୍ଗନିଜ ମୁଖ୍ୟତଃ) ଏବଂ ବିଶୋଧିତ ଧାତବ ପିଣ୍ଡ (ଯଥା ଆଲୁମିନା) ଭାରତର ଶିଳ୍ପଜାତ ରପ୍ତାନୀ ଦ୍ରବ୍ୟ । ଭାରତରୁ ମୁଖ୍ୟ ରପ୍ତାନୀ ପଦାର୍ଥ

ହେଉଛି ଗହଣା ସାମଗ୍ରୀ, କାର୍ପେଟ୍, ବସ୍ତ୍ର ଏବଂ ଏବେ ଏବେ ଫୁଲ । ଏସବୁ ସହ ବୃହତ ଶିଳ୍ପର ସମ୍ବନ୍ଧ ନାହିଁ ।

**ପ୍ରଶ୍ନ- ସରକାରଙ୍କ ଠାରୁ ଆରମ୍ଭ କରି ୮୦ଭାଗ ବୁଦ୍ଧିଜୀବୀ ଓ ସାଧାରଣ ଲୋକମାନଙ୍କ ପର୍ଯ୍ୟନ୍ତ ସମସ୍ତେ ବିଶ୍ୱାସ କରୁଛନ୍ତି ଯେ, ବୃହତ ଶିଳ୍ପରେ ହିଁ ବିକାଶ ସମ୍ଭବ । ଏଣୁ ଏମାନେ ଶିଳ୍ପର ସପକ୍ଷରେ । ଏମାନେ ଯେ ଦେଶର ହିତ ଚିନ୍ତା କରୁନାହାଁନ୍ତି ବୁଝାଯିବ କି ? ତା' ଛଡା ଏକ ବୃହତ ଶ୍ରେଣୀ ଶିଳ୍ପର ସପକ୍ଷରେ ଠିଆ ହୋଇଥିବାବେଳେ ଆପଣମାନେ ଅଳ୍ପକେତେଜଣ ଶିଳ୍ପ ବିପକ୍ଷରେ ଯିବା ଠିକ୍ କି ?**

**ଉତ୍ତର -** "ଏକ ବୃହତ ଶ୍ରେଣୀ ଶିଳ୍ପ ସପକ୍ଷରେ ଠିଆ ହୋଇଥିବା" ଉକ୍ତିଟିର କୌଣସି ବାସ୍ତବ ଆଧାର ଥିବାପରି ମନେହୁଏ ନାହିଁ । ଏଇଥିପାଇଁ ମନେହୁଏ ନାହିଁ ଯେ ଯଦି ସତରେ ଏକ ବୃହତ ଶ୍ରେଣୀ ତା ସପକ୍ଷରେ ଥା'ନ୍ତେ ତେବେ ସମସ୍ତ ବୃହତ ଗଣମାଧ୍ୟମ, ସରକାର ଓ ତଥାକଥିତ ବୁଦ୍ଧିଜୀବୀ ବର୍ତ୍ତମାନର ଶିଳ୍ପାୟନ ସପକ୍ଷରେ ସଂଗଠିତ ପ୍ରଚାର ଚଳେଇ ନଥାନ୍ତେ । ଦ୍ୱିତୀୟ କଥା, ସରକାରଙ୍କୁ "ଶିଳ୍ପାୟନ" ପାଇଁ ବନ୍ଧୁକ ଓ ଗୁଳି ବ୍ୟବହାର କରିବାକୁ ପଡୁନଥାନ୍ତା । ଶିଳ୍ପାୟନ ନାଁରେ ଏହି ବିନାଶ ସୃଷ୍ଟିକାରୀ ପକଳ୍ପକୁ ସମସ୍ତ ଜାଗାରେ ସମାନ ଅବହେଳିତ ବର୍ଗ ଯଥା ଚାଷୀ, ଆଦିବାସୀ ଓ ଦଳିତମାନେ ପ୍ରତିରୋଧ କରୁଛନ୍ତି । ଯେକୌଣସି ସାଧାରଣ ବୁଦ୍ଧି ଥିବା ମଣିଷ ଜାଣେ ଯେ ଆମ ସମାଜର ଏହିମାନେ ହିଁ ୮୦ ଭାଗ ଅଟନ୍ତି । ଅତଏବ ୮୦ ଭାଗ ଲୋକ ଏହାକୁ ବିରୋଧ କରୁଛନ୍ତି । ଯେହେତୁ ସେ ବିରୋଧ ଖଣ୍ଡିତ, ବିଛିନ୍ନ ଓ ଅସଂଗଠିତ ତେଣୁ ତାହା କେତେଜଣଙ୍କର ବୋଲି ଦେଖାଯାଉଛି ।

ଯେହେତୁ ଏହି "ଶିଳ୍ପାୟନ" ଏକ କ୍ଷୁଦ୍ର କାରଖାନା ଗୋଷ୍ଠୀ ତଥା ସେମାନେଙ୍କର ବୋଲକରା ବୁଦ୍ଧିଜୀବୀଙ୍କର ସ୍ୱାର୍ଥ ସିଦ୍ଧ କରୁଛି ତେଣୁ ସେମାନେ ଏହାକୁ ଦେଶର ପ୍ରଗତି ଓ ସ୍ୱାର୍ଥର ପୋଷାକ ପିନ୍ଧେଇବାକୁ ଚାହୁଁଛନ୍ତି । ପ୍ରତ୍ୟେକ ଜନଆନ୍ଦୋଳନକୁ ନିରେଖି ଦେଖିଲେ ଏହା ସ୍ପଷ୍ଟ ବାରି ହୋଇପଡିବ । ସେମାନଙ୍କ ଦୃଷ୍ଟିରେ ଏହି ଅବହେଳିତ ଗୋଷ୍ଠୀଟି ମଣିଷ ନୁହଁନ୍ତି, ଦେଶବାସୀ ବା କେମିତି ?

**ପ୍ରଶ୍ନ- ଯଦି ବୃହତ ଶିଳ୍ପ ନୁହେଁ ତେବେ ବିକଳ୍ପ କ'ଣ ?**

ଯାହା ପ୍ରଚଳିତ ତା ବିରୁଦ୍ଧରେ ସ୍ୱର ଉତ୍ତୋଳନ ହିଁ ବିକଳ୍ପର ପ୍ରଥମ ସୋପାନ । ପ୍ରତିବାଦର ସ୍ୱର ଭିତରୁ ହିଁ ବିକଳ୍ପ ନିର୍ମାଣ ପାଇଁ ରସଦ ମିଳିବ ; ଅର୍ଥାତ୍ ପ୍ରତ୍ୟେକ ବିକଳ୍ପ ପ୍ରୟାସୀ ମଣିଷ ପ୍ରତିବାଦର ଭାଷାକୁ ବୁଝିବା ଦରକାର ତାକୁ ଆପଣେଇବା ଦରକାର ।

ଓଡିଶାରେ ପ୍ରତିବାଦର ଧାରାକୁ ଅନୁଧ୍ୟାନ କଲେ ମୋଟାମୋଟି ଦୁଇ କିସମର ପ୍ରତିବାଦ ଦେଖୁ - ନିର୍ଦ୍ଦିଷ୍ଟ ପ୍ରକଳ୍ପକୁ ବିରୋଧ କରି ଗଢିଉଠୁଥିବା ପ୍ରତିବାଦ; ଦ୍ୱିତୀୟତଃ ମାର୍କ୍ସ - ଲେଲିନୀୟ ଆଦର୍ଶରେ ଅନୁପ୍ରାଣୀତ ଶସସ୍ତ୍ର ଓ ଅଶସ୍ତ୍ର ପ୍ରତିବାଦ ।

ପ୍ରଥମ କିସମ ପ୍ରତିବାଦର ଚରିତ୍ର ପୂର୍ବରୁ ଆଲୋଚିତ ହୋଇଛି । ସଂକ୍ଷେପରେ କହିଲେ ସ୍ଥାନୀୟ ବାସିନ୍ଦା ନିଜର ପ୍ରାକୃତିକ ସମ୍ବଳ (ଜମି, ଜଙ୍ଗଲ, ଜଳ) ଆଧାରିତ ଜୀବିକାକୁ ସୁରକ୍ଷା ତଥା ସେସବୁର ଆଧାରରେ ଅର୍ଥନୈତିକ ପ୍ରଗତି ପାଇଁ ଦାବି କରୁଛନ୍ତି । ଉଦାହରଣ ସ୍ୱରୂପ, କାଶୀପୁରରେ ଆଲୁମିନିୟମ ପ୍ରକଳ୍ପକୁ ବିରୋଧ କରୁଥିବା ସ୍ଥାନୀୟ ଜନସାଧାରଣ ନିଜର ଜମି, ଜଳ ଓ ଜଙ୍ଗଲକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଛୋଟ ଛୋଟ ଚେକ୍ ଡ୍ୟାମ୍ ମାଧ୍ୟମରେ ଜଳସେଚନ ପାଇଁ ଦାବି କରୁଛନ୍ତି ଯଦ୍ୱାରା ସ୍ଥାନୀୟ କୃଷିର ଉନ୍ନତି ଘଟିପାରିବ ଓ ଲୋକଙ୍କର ଆର୍ଥିକ ସ୍ଥିତି ସୁଧୁରିବ । ଏହା ବାଦ୍ ସରକାର ଜମିକୁ ଭୂମିହୀନମାନଙ୍କ ମଧ୍ୟରେ ବାଣ୍ଟିବା, ଶିକ୍ଷା ଓ ସ୍ୱାସ୍ଥ୍ୟସେବାର ବନ୍ଦୋବସ୍ତ କରିବା ଅନ୍ୟତମ ଦାବି । କଳିଙ୍ଗନଗରରେ ବି ଲୋକମାନଙ୍କର ଦାବି ସେହି ସମାନ ପ୍ରକାରର ।

ଜନଆନ୍ଦୋଳନର ପ୍ରତିବାଦକୁ ଆଧାର କରି ବିକଳ୍ପ ଖୋଜିବାର କଥା ଯଦି ଉଠେ, ଭୂସଂସ୍କାର, କୃଷିର ଉନ୍ନତି ହିଁ ପ୍ରଥମ କଥା ହେବ । ଯଦ୍ୱାରା ଲୋକମାନଙ୍କର ସମ୍ବଳ ଉପରେ ଅଧିକାର ବଜାୟ ରହିବ, ପରିବେଶ ଯାହା ସ୍ଥାନୀୟ ବାସିନ୍ଦାଙ୍କ ଜୀବିକା ସହ ଅଙ୍ଗାଙ୍ଗୀ ଜଡିତ ତାହା ଅସନ୍ତୁଳିତ ହେବନାହିଁ ।

ଦ୍ୱିତୀୟ କିସମ ଲଢେଇରେ ଦେଖିବାକୁ ମିଳେ ଜମିଦାରମାନଙ୍କଠାରୁ ଜମି ଅକ୍ତିଆର କରି ଭୂମିହୀନମାନଙ୍କ ମଧ୍ୟରେ ବାଣ୍ଟିବା ଓ ସ୍ଥାନୀୟ ଜନସାଧାରଣ, ବିଶେଷକରି ଆଦିବାସୀଙ୍କୁ ଜଙ୍ଗଲ ଉପରେ ଅଧିକାର ସାବ୍ୟସ୍ତ କରିବା (ବନ୍ୟବିଭାଗ କର୍ମଚାରୀମାନଙ୍କର ଶୋଷଣରୁ ସେମାନଙ୍କୁ ରକ୍ଷା କରିବା) । ଏହି ପ୍ରକାର ଲଢେଇ ଓଡିଶାର ଆଦିବାସୀ ଇଲାକାମାନଙ୍କରେ କେତେବେଳେ ଶସସ୍ତ୍ର ତଥା ଅଶସ୍ତ୍ର ରୂପରେ ଦେଖିବାକୁ ମିଳୁଛି ।

ଏ ସମସ୍ତ ପ୍ରକାର ପ୍ରତିବାଦ/ଲଢେଇକୁ ଆଧାର କରି ବିକଳ୍ପ କଥା ଚିନ୍ତାକଲେ ଭୂସଂସ୍କାର, କୃଷିର ଉନ୍ନତି, ସ୍ଥାନୀୟ ପ୍ରାକୃତିକ ସମ୍ବଳର ସୁରକ୍ଷା ହିଁ ପ୍ରଥମ କଥା ହେବ । ସେ ସବୁର ନିର୍ଦ୍ଦିଷ୍ଟ ରୂପରେଖ କ'ଣ ହେବ ତାହା ପ୍ରତିବାଦ/ଲଢେଇର ଗତି ଓ ଦିଗ ଉପରେ ନିର୍ଭର କରିବ । ଅନ୍ୟ ଭାଷାରେ କହିଲେ ଲଢେଇଗୁଡିକ ଗତିଶୀଳ ହେଲେ ବିକଳ୍ପର ରୂପରେଖ ସେତିକି ସ୍ପଷ୍ଟ ହେବ ।

***ପ୍ରସ୍ତୁତି :- ନିଗମ***



# ଝାରସୁଗୁଡ଼ା – ସମ୍ବଲପୁର – ସୁନ୍ଦରଗଡ଼
# ବିକାଶ ନାମରେ ଶିଳ୍ପାୟନ ନୁହେଁ ନର୍କାୟନ

*କୁମାର ହସନ*

ଓଡ଼ିଶାରେ ଶିଳ୍ପାୟନ ପାଇଁ ଭିତ୍ତିଭୂମି ନ ଥିଲାବେଳେ ପଶ୍ଚିମ ଓଡ଼ିଶାର ପ୍ରାଣକେନ୍ଦ୍ର ସମ୍ବଲପୁର ଓ ମରୁଭୂମି ପ୍ରବଣ ଝାରସୁଗୁଡ଼ା ଜିଲ୍ଲାରେ ଯେଉଁଭଳି ଭାବରେ ଦ୍ରୁତ ଶିଳ୍ପାୟନ କରାଯାଉଛି ତାହା ସମଗ୍ର ରାଜ୍ୟ ପାଇଁ ପ୍ରାଣଘାତୀ ହେବ । ଝାରସୁଗୁଡ଼ା, ରେଙ୍ଗାଲି ଅଞ୍ଚଳରେ ଛତୁ ଭଳି ଗଢ଼ି ଉଠୁଥିବା ମାତ୍ରାଧିକ ସ୍ପଞ୍ଜ ଆଇରନ୍ କାରଖାନା ଯୋଗୁଁ ସମଗ୍ର ଅଞ୍ଚଳ ଏକ ଗ୍ୟାସ୍‌ଚେମ୍ବରରେ ପରିଣତ ହେବ ।

ଅବିଚାରିତ ଶିଳ୍ପ କାରଖାନା, ଖଣିଜନିତ ବିପର୍ଯ୍ୟୟ, ଅପରିଣାମଦର୍ଶୀ ପରିବେଶ ଧ୍ୱଂସ, ଜଙ୍ଗଲ, ପରିବେଶ ଆଇନ ନିର୍ଦ୍ଦେଶାବଳୀ, ମାନବିକ ଅଧିକାରର ଖୋଲା ଉଲ୍ଲଂଘନ ଓ ଲୋକବିରୋଧୀ ବିକାଶ ନୀତି, ନବଗଠିତ ଝାରସୁଗୁଡ଼ା ଜିଲ୍ଲାର ଇବ୍ ଉପତ୍ୟକାକୁ ମରୁଭୂମିକରଣର ଆଦ୍ୟ ପ୍ରକ୍ରିୟା ଭିତରକୁ ଟାଣି ନେଇଥିବା କଥା ଅଷ୍ଟମ ଦଶକରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସର୍ବେକ୍ଷଣ ରିପୋର୍ଟରେ ପ୍ରକାଶ ପାଇସାରିଛି ।

ଜାତିସଂଘର ପରିବେଶ ସହାୟକ ଜୀବନ ଉପଯୋଗୀ ଶିଳ୍ପର ଆର୍ନ୍ତଜାତିକମାନଙ୍କୁ ଉଲ୍ଲଂଘନ କରି ଓଡ଼ିଶାର ଏହି ତୃତୀୟ ସର୍ବାଧିକ ଆତଙ୍କପ୍ରଦ ଉପତ୍ୟକା, ଏହାର ପ୍ରାକୃତିକ ଭାରସାମ୍ୟ ହରାଇବା ସହ ଜୈବ ବିବିଧତା ମଧ୍ୟ ହରାଇ ସାରିଛି । ଭୟାବହ, ଜଳ, ବାୟୁ, ମୃତ୍ତିକା, ଶବ୍ଦ ପ୍ରଦୁଷଣ ସହ ଭୂତଳ ଜଳସ୍ତର, ବାର୍ଷିକ ବୃଷ୍ଟିପାତ କମିଛି । ବର୍ଷାଦିନ, ସକାଳୁଆ ଆର୍ଦ୍ରତା ହରାଇ ଏହାର କ୍ରମବର୍ଦ୍ଧମାନ ତାପମାତ୍ରା ରାଜ୍ୟର ସର୍ବାଧିକ ତାପମାତ୍ରାର ତତ୍‌ଲାଗଡ଼ (ଟିଟିଲାଗଡ଼) ର ତାପମାତ୍ରା ରେକର୍ଡ ମଧ୍ୟ ଭଙ୍ଗ କରି ସାରିଛି । ଏଭଳି ଭୟାବହ ପରିସ୍ଥିତିରେ ଅଞ୍ଚଳର ସୁରକ୍ଷା ଓ ସୁଧାର ପାଇଁ ଆବଶ୍ୟକ ଚେଷ୍ଟା କରାଯିବା ପରିବର୍ତ୍ତେ ପୂର୍ବରୁ ରହିଥିବା ହିମଗିରି-ରାମପୁର ଭୂଗର୍ଭ କୋଇଲା ଖଣି, ଇବ୍ ନଦୀ କୋଇଲା ଖଣି, ଓରିଏଣ୍ଟ କୋଇଲା ଖଣି, ୱେଷ୍ଟର୍ଣ୍ଣ, ସାଉଥ୍-ଇଷ୍ଟର୍ଣ୍ଣ କୋଲ୍‌ଫିଲ୍‌ଡ, କୋଲ-ଇଣ୍ଡିଆର ଭୂଗର୍ଭ କୋଇଲା ଖଣି ସହ ଏବେ ଏମ୍.ସି.ଏଲ୍ ବିଭିନ୍ନ ଖୋଲାମୁହଁ କୋଇଲାଖଣି, ବନ୍ଦ ହୋଇଯାଇଥିବା ଓରିଏଣ୍ଟ ପେପର ମିଲ୍, ଟିସ୍‌କୋର ଖଣିଖାଦାନ, ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ର, ବେଲ୍‌ପାହାଡ଼ ରିଫାକଟ୍ରିଜ, ଲାର୍ସନ ଟୁବ୍ରୋ ସିମେଣ୍ଟ, ଭାଷ୍କର ଟେକ୍ ଷ୍ଟାଇଲ ଆଦି ସଂଲଗ୍ନ ଅଂଚଳରେ ଗୁଡ଼ିଏ ବୃହତଶିଳ୍ପ ସମେତ ୧୭ ଟି ସ୍ପଞ୍ଜ ଆଇରନ୍ କାରଖାନା ପାଇଁ ଅନୁମତି ପ୍ରଦାନ ସରିଥିଲା ବେଳେ ବହୁ କାରଖାନା ଚୁକ୍ତିପତ୍ର ସ୍ୱାକ୍ଷର କରିବା ଅପେକ୍ଷାରେ ରହିଛି । ଏଗୁଡ଼ିକ ଏ ଅଂଚଳ ପାଇଁ ମୃତ୍ୟୁଦୂତ ସାଜିବାକୁ ଯାଉଛନ୍ତି ।

ଶ୍ରୀପୁରାଠାରେ ଏଲେନ୍ ମେଟାଲିକ୍, ବଡ଼ମାଲରେ-ପବନଦୂତ ସ୍ପଞ୍ଜ, ଭଗବତୀ ସ୍ପଞ୍ଜ, ଏସ୍‌.ପି.ଏସ୍ ସ୍ପଞ୍ଜ, ସିରିଆପାଲିରେ ମାଧବ ଇସ୍ପାତ, ହିର୍ମାରେ ଏ.ସ୍‌.ଏମ.ପି ପାୱାର ଜେନେରେଶନ ସ୍ପଞ୍ଜ କାରକାନା ଉତ୍ପାଦନ ଆରମ୍ଭ କରି ସାରିଛି । ସେହିପରି ହିର୍ମାର ସିଂହଲ ଇଣ୍ଟରପ୍ରାଇଜେସ୍ ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚି ଏ ମଧ୍ୟରେ ଉତ୍ପାଦନ ଆରମ୍ଭ କରିବାକୁ ଯାଉଛି । ଏହାଛଡ଼ା ଦୁର୍ଲଗାରେ ଜୈନ ସ୍ପଞ୍ଜ, ମରାକୁଟାରେ ଏକ୍‌ସନ ଇସ୍ପାତ ଏଣ୍ଡ ପାୱାର୍, ଏମ୍‌.ଏସ୍‌.ସି ମେଟାଲିକ୍, ମହାକୁଟା-ପଣ୍ଡରୀ ପଥରରେ ଅଗ୍ରୀମ ଷ୍ଟିଲ, ଲହଣ୍ଡାବୁଡ଼ାରେ ଇଷ୍ଟର୍ଣ୍ଣ ଷ୍ଟିଲ, ଖୁନାପାଲି-ରଘୁନାଥପାଲିରେ ଜୟ ହନୁମାନ ଉଦ୍ୟୋଗ, କୁଲାବିରା – ବଡ଼ବାହାଲରେ ମା ଦୁର୍ଗା ସ୍ମେଲଟର ପ୍ରାଇଭେଟ୍ ଲିମିଟେଡ୍, ତାଲପଟିଆରେ ଡ଼ାଲମିଆ ଷ୍ଟିଲ, ଲଖନପୁରଠାରେ ଇଷ୍ଟର୍ଣ୍ଣ ଷ୍ଟିଲ କାରଖାନାର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି । ଶ୍ରୀପୁରାଠାରେ କାମଧେନୁ ଷ୍ଟିଲ୍ ପାଇଁ ଉଦ୍ୟମ ଜାରି ରହିଛି । ମହାନଦୀ କଡ଼ରେ ଥିବା ଚାଉଁରପୁରଠାରେ ରାଠି ଷ୍ଟିଲ ପ୍ରତିଷ୍ଠା ଉଦ୍ୟମକୁ ଲୋକେ ବିରୋଧ କରୁଛନ୍ତି ।

ସମ୍ବଲପୁର ଜିଲ୍ଲାରେ ରେଙ୍ଗାଲି ନିକଟବର୍ତ୍ତୀ ଠେଲକୁଲି ଠାରେ ଭୂଷଣ ଷ୍ଟିଲ କାରଖାନା ନିର୍ମାଣ ଶେଷ ପର୍ଯ୍ୟାୟରେ ପହଞ୍ଚି ଉତ୍ପାଦନ ଆରମ୍ଭ କଲାଣି । ବମାଲୋଇଠାରେ ଆର୍ଯ୍ୟନ ଇସ୍ପାତ, ଗଣେଶନଗରଠାରେ ଶାମ ଡ଼ି.ଆର.ଆଇ, ରେଂଗାଲିରେ ସମଲେଶ୍ୱରୀ ସ୍ପଞ୍ଜ, ମଣ୍ଡଲୋଇରେ ବିରାଜ ଷ୍ଟିଲର କାମ ଦ୍ରୁତ ଗତିରେ ଆଗେଇ ଚାଲିଛି ।

ତା ସାଙ୍ଗକୁ ଝାରସୁଗୁଡ଼ା ଓ ଲପଙ୍ଗାରେ ଦୁଇଟି ବୃହତ ଶିଳ୍ପ ଷ୍ଟେରଲାଇଟ୍ ଓ ଆଦିତ୍ୟ ବିର୍ଲାର ହିଣ୍ଡାଲକୋ, ବୃହତ ତାପଜ ବିଦ୍ୟୁତ କେନ୍ଦ୍ର ଓ ଆଲୁମିନିୟମ ପ୍ରକଳ୍ପ ପ୍ରତିଷ୍ଠା କରୁଛନ୍ତି । ଝାରସୁଗୁଡ଼ାଠାରେ ୯ ଶହ ମେଗାୱାଟ୍ ବିଦ୍ୟୁତ ଉତ୍ପାଦନ କ୍ଷମତା ବିଶିଷ୍ଟ ୪ ଟି ପାୱାର ପ୍ଲାଣ୍ଟ ସ୍ଥାପନ ପାଇଁ ଷ୍ଟେରଲାଇଟ ଗ୍ରୁପର ଷ୍ଟେରଲାଇଟ ଅପଟିକାଲ ଟେକ୍ନୋଲୋଜି ଲିମିଟେଡ୍ (SOTL), ଝାରସୁଗୁଡ଼ା ଜିଲ୍ଲା ସମେତ ସମ୍ବଲପୁର ଜିଲ୍ଲାର ରେଙ୍ଗାଲି ଅଧିନସ୍ଥ ପ୍ରାୟ ୨.୦୦୦ ହେକ୍ଟର (ପ୍ରାୟ ୫,୦୦୦ ଏକର) ଜମିର ଅଧିଗ୍ରହଣ କରୁଛି । ଏହି ଜମି ମଧ୍ୟରେ ୧୦୭୪.୭୯ ଏକର, କେବଳ ଚାଷ ଜମି ସେ ମଧ୍ୟରୁ ଭୁର୍କାମୁଣ୍ଡାର ୧୦ ଏକର, ଭାଗିପାଲିର ୧୯୧.୮୬ ଏକର, ଦଲକିର ୨୩.୬୪ ଏକର, ପୂର୍ଣ୍ଣାର ୪୪.୬୪ ଏକର, ବଂଢାରୀର ୨୪୯.୮୬ ଏକର, କୁରେବଗା ୧୯୬.୫ ଏକର, ବୃନ୍ଦାମାଲର ୪୫୭.୯୮ ଏକର ଚାଷଜମି । ଏହି କାରଖାନା ଯୋଗୁଁ ହଜାର, ହଜାର ଏକରର ଚାଷ ଉଜୁଡ଼ିଯିବ ।

ବିଡ଼ମ୍ବନା କଥା ଯେ, ଚିରମରୁଡ଼ି ପ୍ରବଣ ଏହି ଅଞ୍ଚଳରେ କମ୍ପାନୀର ଆସ୍ ପଣ୍ଡ (ପାଉଁଶ ପୋଖରୀ) ପାଇଁ ପ୍ରାୟ ୧୨୫ ହେକ୍ଟର ଜମି ଯୋଗାଇବାକୁ ଯାଇ ରାଜ୍ୟ ସରକାର ନିଜେ ମଂଜୁର କରିଥିବା ୨ ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ବାତିଲ୍ କରିବାକୁ ମଧ୍ୟ ପଛେଇ ନାହାନ୍ତି ।

ଆଦିତ୍ୟ ବିର୍ଲା କମ୍ପାନୀ ପାଇଁ ଏ ଯାଏଁ ୩,୭୩୩·୦୦ ଏକର ଜମି ଅଧିଗ୍ରହଣ କରାଯାଇ ସାରିଛି । ଏଥିମଧ୍ୟରୁ ୨୩୪୩·୦୦ ଏକର ବେସରକାରୀ ରୟତି ଓ ୧୩୯୦·୦୦ ଏକର ସରକାରର ଜମି । କମ୍ପାନୀ ତରଫରୁ ମୋଟ୍ ୪,୭୬୧·୪୩ ଏକର ଜମି ଅଧିଗ୍ରହଣ ପ୍ରସ୍ତାବ ରହିଛି । ଶ୍ୟାମ ଡି ଆର ୩୮·୭୩ ଏକର ଜମି ଆଧିଗ୍ରହଣ କରି ୯୪·୦୦ ଏକର ଗ୍ରାମ୍ୟ ଜଙ୍ଗଲ ପାଇଁ ଦରଖାସ୍ତ ଦେଇଛି । ଆର୍ୟନ ଇସ୍ପାତ୍ ଏବେ ୩୦୦ ଏକର ଜମି ଅଧିଗ୍ରହଣ କରି ଆଉ ୬୧·୦୦ ଏକର ପାଇଁ ଦରଖାସ୍ତ ଦେଇଛି । ଡ଼ିରାଜ ୩୦୦ ଏକର ପାଇଁ ଦରଖାସ୍ତ ଦେଇଛି ଓ ଏ ଯାଏ ୪୮·୪୭ ଏକର ମଂଜୁରି ପାଇଛି । ଗୁଲାମାଲର ସମଲେଶ୍ୱରୀ (ମିତ୍ତଲ) ୨୨·୭୫ ଏକର ରୟତି, ଲପଙ୍ଗା, ମଲିଆଟିକରାରେ ସମଲେଶ୍ୱରୀ ୨୫·୦୦ ଏକର ରୟତି ଓ ବିଶାଲଖିଣ୍ଡାରେ ଜୟ ମା ସମଲେଶ୍ୱରୀ ସ୍ପଞ୍ଜ ୪·୦୦ ଏକର ରୟତି ଜମି ଅଧିଗ୍ରହଣ କରିଛି । ସେହିପରି ଭୂଷଣ ଷ୍ଟିଲ୍ ପକ୍ଷରୁ ୬୩୦·୦୦ ଏକର ରୟତି ଓ ୫୭୦·୭୫ ଏକର ସରକାରୀ ଜମି ଅଧିଗ୍ରହଣ କରାଯାଇଛି ।

ଝାରସୁଗୁଡ଼ା ସହର ଉପକଣ୍ଠରେ ଥିବା ଦେବାଡ଼ିହି ନାଳ ଉପରେ ପ୍ରସ୍ତାବିତ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ପାଇଁ ନାବାର୍ଡ ତରଫରୁ ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠିରୁ ଅଷ୍ଟମ ଯୋଜନାରେ ୪୧ ଗର୍ବ କି·ମି· ପରିମିତ ଖାଲୁଆ ଜମି ଉପରେ ହେବାକୁ ଥିବା ଏହି ପ୍ରକଳ୍ପକୁ ଏପ୍ରିଲ ୧୪,୨୦୦୩ ରେ ତତ୍କାଳୀନ ଜଳସମ୍ପଦ ମନ୍ତ୍ରୀ ମଙ୍ଗଳା କିଷାନ ଶୁଭ ଦେଇଥିଲେ । ଦେବାଡ଼ିହି ର ୪ ଏକର ଓ ରୁଡ଼ିଗାଁର ୬ ଏକର ଜମି ଅଧିଗ୍ରହଣ ପାଇଁ କ୍ଷୁଦ୍ର ଜଳସେଚନ ବିଭାଗ ପକ୍ଷରୁ ପ୍ରାଥମିକ କାର୍ଯ୍ୟ ପାଇଁ ୧·୧୬ ଲକ୍ଷ ଟଙ୍କା ମଧ୍ୟ ଜମା ଦିଆଯାଇଥିଲା । ତେବେ ଶେଷ ପର୍ଯ୍ୟାୟରେ ପାଉଁଶ ପୋଖରୀ ପାଇଁ ଏ ପ୍ରକଳ୍ପ ବାତିଲ କରି ଦିଆଗଲା ।

ଏହି ପ୍ରକଳ୍ପ ହୋଇଥିଲେ ପୂରନା, ଗୁଡ଼ିୟାଁ, ଦେବାଡ଼ିହ, କୁଶୁପାଲି, କୁବେରବଗା, ଦଲକି, ସିରିଆପାଲି ଆଦି ଗାଁର ୧ ହଜାର ହେକ୍ଟର ଚାଷଜମି ଜଳସେଚନ ସୁବିଧା ପାଇଥାନ୍ତା ଓ ୫୦ ହେକ୍ଟର ଜମିରେ ରବିଚାଷ ହୋଇପାରିଥାନ୍ତା । ସେହିପରି ବଂଜାରୀ ଗ୍ରାମର ବଂଜାରୀ କଟାରେ ନିର୍ମିତ ହେବାକୁ ଥିବା କ୍ଷୁଦ୍ର ଜଳସେଚନ ପ୍ରକଳ୍ପକୁ ମଧ୍ୟ ବାତିଲ୍ କରିଦିଆଯାଉଛି ।

ଆହୁରି ମଧ୍ୟ ବିସ୍ମୟର କଥା ଯେ, ଏହି ବୃହତ ପ୍ରକଳ୍ପରେ କ୍ଷତିଗ୍ରସ୍ତ ଜନସାଧାରଣଙ୍କୁ କଳାହାଣ୍ଡି ଜିଲ୍ଲାପାଳ ଚିହ୍ନଟ କରି ପ୍ରମାଣପତ୍ର ଦେବା ସହ ସେମାନଙ୍କ ପାଇଁ ପୂର୍ନବାସ ଥଇଥାନ କଲୋନୀ କଳାହାଣ୍ଡିର ଜଗନ୍ନାଥପୁରରେ ନିର୍ମାଣ କରାଯିବ ବୋଲି ପ୍ରକଳ୍ପର ଏକ୍ଜିକ୍ୟୁଟିଭ ସମାରିରେ ପ୍ରକାଶ କରାଯାଇଛି । ପାୱାର ପ୍ଲାଣ୍ଟ ହେବ ଝାରସୁଗୁଡ଼ାରେ, ଯତିଗ୍ରସ୍ତ ଚିହ୍ନଟ କରିବେ । କଳାହାଣ୍ଡି ଜିଲ୍ଲାପାଳ, ଜମି ଓ ଜୀବିକା ହରାଇବେ ଝାରସୁଗୁଡ଼ା ଜିଲ୍ଲାବାସୀ, ପୂର୍ନବାସ କଲୋନୀ କଳାହାଣ୍ଡିରେ ହେବ । ଏଥିରୁ କମ୍ପାନୀ ଓ ରାଜ୍ୟ ସରକାରଙ୍କ ହୀନଉଦ୍ୟମ ବାରି ହୋଇପଡୁଛି ।

ଜର୍ମାନୀ ତରଫରୁ ଦର୍ଶାଯାଇଛି ଯେ, ଦିନକୁ ୩୨ ହଜାର ୮୭୮ ଟନ୍ କୋଇଲା ଇନ୍ଧନ ଭାବେ ବ୍ୟବହାର କରାଯିବ । ଏଥିରୁ ଦୈନିକ ୧୨,୫୦୪ ଟନ୍ ପାଉଁଶ ନିର୍ଗତ ହେବ । ଏଥିମଧ୍ୟରୁ ୧୦,୦୦୮ ଟନ୍ ଉଡ଼ନ୍ତା ପାଉଁଶ ଓ ୨,୪୮ ଟନ୍ ବଟମ୍ ପାଉଁଶ ନିର୍ଗତ ହେବ । ବଟମ୍ ପାଉଁଶ ଯେନେ ତେନ ଭାବେ ସଂରକ୍ଷଣ କରି ରଖାଯାଇପାରେ ହେଲେ ଉଡ଼ନ୍ତା ପାଉଁଶ ସଂରକ୍ଷଣ କି ଉପଯୋଗ ନିକଟବର୍ତ୍ତୀ ସିମେଣ୍ଟ କଂପାନୀ ଛଡ଼ା ଅନ୍ୟ କୌଣସି ଶିଳ୍ପାନୁଷ୍ଠାନ କରେ ନାହିଁ । ତେବେ ଏହାର ଆବଶ୍ୟକତା ମଧ୍ୟ ସିମେଣ୍ଟ କଂପାନୀ ପାଇଁ ଯଥେଷ୍ଟ କମ୍ । ପ୍ରତି ମାସ ୩ ଲକ୍ଷ ୭୫ ହଜାର ୧୨୦ ଟନ୍ ଉଡ଼ନ୍ତା ପାଉଁଶ ସୃଷ୍ଟି ହେବ । ଫଳରେ ତାପ ବଢ଼ିଯିବ । ମାସକୁ ୨ ଲକ୍ଷ ୮୬ ହଜାର ୩୪୦ ଟନ୍ କୋଇଲା ଇନ୍ଧନ ରୂପେ ବ୍ୟବହାର ହେବାଦ୍ୱାରା କୋଇଲାରେ ଥିବା ୦.୫%ପରିମାଣର ସଲଫର ଡ଼ାଇଅକ୍ସାଇଡ ନିର୍ଗତ ହୋଇ ପ୍ରାଣୀଜଗତର ବ୍ୟାପକ କ୍ଷୟକ୍ଷତି ଘଟାଇବ । ସେହିପରି ନିର୍ଗତ ନାଇଟ୍ରୋଜେନ୍ ଅକ୍ସାଇଡ଼ ମଧ୍ୟ ପରିବେଶ ଓ ପ୍ରାଣୀଜଗତ ପାଇଁ ହାନିକାରକ ।

ପ୍ରକଳ୍ପ ରିପୋର୍ଟ ଅନୁଯାୟୀ ପ୍ରକଳ୍ପରୁ ନିର୍ଗତ ଦୂଷିତଜଳ ପୁନଃ ପ୍ରକ୍ରିୟାକରଣ କଲାପରେ ବଳକା ଜଳ ନାଳଗୁଡ଼ିକରେ ଛଡ଼ାଯିବ । ଏ ସବୁ ଭେଡ଼େନ ନଦୀ ଦେଇ ଇବ୍ ଓ ହୀରାକୁଦ ଜଳ ଭଣ୍ଡାରରେ ମିଶିବ । ରାସାୟନିକ ପଦାର୍ଥ ମିଶ୍ରିତ ଏହି ଦୂଷିତ ଜଳଯୋଗୁଁ ନଦୀନାଳ ଜଳ ପ୍ରଦୂଷିତ ହେବ । ଫଳରେ ଜଳଚର ପ୍ରାଣୀର ବିଲୋପ ଘଟିବ । ସମଗ୍ର ଅଞ୍ଚଳର ଲୋକେ ଏଇ ନଦୀ ନାଳ ଉପରେ ସ୍ନାନ ଓ ପାନୀୟ ଜଳ ପାଇଁ ପ୍ରତ୍ୟକ୍ଷ ଭାବରେ ନିର୍ଭରଶୀଳ । ନଦୀ, ନାଳ, ଜଳଭଣ୍ଡାର ଉପରେ ନିର୍ଭର କରି ହଜାର ହଜାର ମତ୍ସ୍ୟଜୀବି ଜୀବିକା ନିର୍ବାହ କରୁଛନ୍ତି । ହୀରାକୁଦ ଜଳଭଣ୍ଡାର ପୂର୍ବରୁ ପାରଦ ପ୍ରଦୂଷଣ ରହିଥିଲା ବେଳେ କେବଳ ଏହି କାରଖାନାରୁ ଦୈନିକ ୩୭ ହଜାର ୪୧୬ ଘନମିଟର ଦୂଷିତ ଜଳ ନିର୍ଗତ ହେବ । ହୀରାକୁଦ ଜଳଭଣ୍ଡାର ଧୀରେ ଧୀରେ ପୋତି ହୋଇ ପଡୁଥିବାରୁ ଏହାର ଜଳଧାରଣ କ୍ଷମତା ମଧ୍ୟ ହ୍ରାସ ପାଇବାରେ ଲାଗିଛି । ଏହାର ପାଣି ଆବଶ୍ୟକ ମତେ ବିଦ୍ୟୁତ ଉତ୍ପାଦନ ପାଇଁ ନିଅଣ୍ଟ ହେଉଥିବା ବେଳେ ସବୁ କାରଖାନାଗୁଡ଼ିକ ଏହି ଜଳଭଣ୍ଡାର ଉପରେ ନିର୍ଭରଶୀଳ । ଫଳରେ ସେହି ଅଞ୍ଚଳରେ ଅଟଳାବସ୍ଥା ସୃଷ୍ଟି ହେବା ସହ ଅଞ୍ଚଳର ସାଧାରଣ ଅର୍ଥନୀତି ମଧ୍ୟ ଗଭୀର ଭାବରେ ପ୍ରଭାବିତ ହେବ । ପାୱାର ଚେନେଲରୁ ୧୦ କ୍ୟୁସେକ୍ ପାଣି ଶିଳ୍ପ ପାଇଁ ଦେବାକୁ ସ୍ଥିର କରାଯାଇଛି । ସ୍ପଞ୍ଜ କାରଖାନା ଅତ୍ୟଧିକ ପାଣି ଆବଶ୍ୟକ କରେ । ଏହି ପାଣି ନେବାକୁ ସବୁ କାରଖାନା ସରକାର ସହ ଚୁକ୍ତି କରି ଚାଲିଛନ୍ତି । ସ୍ପଞ୍ଜ ଆଇରନ୍ କାରଖାନା ଯେଉଁଠି ବି ହୋଇଛି ତା ଆଖପାଖରେ ୧୫ କି.ମି. ଭିତର କୃଷି ଉତ୍ପାଦନ କମିଯିବାର ନଜିର ରହିଛି । ତାହା କେନ୍ଦୁଝର, ବଡ଼ବିଲରେ ପ୍ରମାଣିତ ହୋଇସାରିଛି । ପ୍ରଦୂଷଣ କଥା ଉଠିଲେ ସେମାନେ ଇ.ଏସ୍.ପି. ନାମକ

ଏକ ପ୍ରଦୂଷଣ ନିୟନ୍ତ୍ରକ ଯନ୍ତ୍ରଲଗେଇ ଦେଇଛନ୍ତି, ମାତ୍ର ତାକୁ ସେମାନେ ଚଲାନ୍ତି ନାହିଁ । ତାହା କେବଳ ତଦନ୍ତକାରୀମାନଙ୍କୁ ଦେଖେଇବା ପାଇଁ ପଡ଼ି ରହିଥାଏ । ପ୍ରତି ଫର୍ଣ୍ଣ ଆଇରନ୍‌ରେ ସର୍ବୋଚ୍ଚ ନିଯୁକ୍ତି ସଂଖ୍ୟା ୪୦-୫୦ ରୁ ବେଶି ନୁହେଁ । ଏଇ ଶିଳ୍ପ ଗୁଡ଼ିକର ଆୟୁଷ ୮-୧୦ ବର୍ଷ ରୁ ବେଶି ନୁହେଁ ବୋଲି ଶୁଣିବାକୁ ମିଳୁଛି ।

ହୀରାକୁଦ ଜଳଭଣ୍ଡାର ବନ୍ୟା ନିୟନ୍ତ୍ରଣ, ଜଳସେଚନ , ବିଦ୍ୟୁତ ଉତ୍ପାଦନ ପାଇଁ ନା ଏବେ ଅବିଭକ୍ତ ସମ୍ବଲପୁର ଜିଲ୍ଲାରେ ଛତୁ ଫୁଟିଲା ଭଳି ଗଢି ଉଠୁଥିବା କଳକାରଖାନାମାନଙ୍କୁ ଜଳଯୋଗାଣ ପାଇଁ ? ଏହା ଏବେ ପ୍ରଶ୍ନବାଚୀ ସୃଷ୍ଟି କରିଛି ।

ବର୍ଷ ବର୍ଷ ହେଲା ପାରଦ ପ୍ରଦୂଷଣ ସହିତ ଅନ୍ୟାନ୍ୟ ରାସାୟନିକ ପ୍ରଦୂଷଣରେ ରଞ୍ଜିତ ଏହାର ୭୪୬ ବର୍ଗ କିଲୋମିଟର ବିସ୍ତୃତ ଜଳରାଶି । ଏହାର କଡ଼ ଓ ଆଖପାଖ ଅଞ୍ଚଳର ଦ୍ରୁତ ଶିଳ୍ପାୟନଜନିତ ପ୍ରଭାବରେ ଆସି ଏହା ଏକ ବିଷ ହ୍ରଦରେ ପରିଣତ ହୋଇଛି । ବିଭିନ୍ନ କଳକାରଖାନାର ଦୂଷିତ ବର୍ଜ୍ୟ ବସ୍ତୁକୁ ଜଳଭଣ୍ଡାରରେ ପକାଇବା ସହ ବିଭିନ୍ନ ଖଣିଖାଦାନ, ଜଙ୍ଗଲ କଟେଇ ଯୋଗୁଁ ହେଉଥିବା ମୃତ୍ତିକା କ୍ଷୟ ଫଳରେ ହୀରାକୁଦ ବନ୍ଧର ପ୍ରାୟ ୨୦ ରୁ ୨୫ ଫୁଟ ଶଯ୍ୟା ପୋତି ହୋଇଗଲାଣି । ସେ ଅନୁପାତରେ ବନ୍ଧର ଜଳଧାରଣ କ୍ଷମତା ମଧ୍ୟ ନିର୍ଦ୍ଧାରିତ ୬୩୦ ଫୁଟରୁ ୨୦/୨୫ ଫୁଟ୍ କମିଗଲାଣି । ୧୯୮୧ ରେ କରାଯାଇଥିବା ଏକ ସର୍ଭେ ରିପୋର୍ଟରେ ବନ୍ଧର ଜଳଧାରଣ କ୍ଷମତା ଯେତେବେଳେ ୮୧୦୫ ନିୟୁତ ଘନ ମିଟରରୁ ୬୬୨୬ ନିୟୁତ ଘ.ମି. ଅର୍ଥାତ ୧୪୭୯ ନିୟୁତ ଘ.ମି. ହ୍ରାସ ପାଇଥିବା କୁହାଯାଇଥିଲା ।

ଏହି ବହୁମୁଖୀ ନଦୀବନ୍ଧ ଯୋଜନା ୧୯୫୭ ରେ ସମ୍ପୂର୍ଣ୍ଣ ହେଲା ପରଠୁ ଏ ପର୍ଯ୍ୟନ୍ତ ଥରକ ପାଇଁ ହେଲେ ସେଚାଞ୍ଚଳର ତଳମୁଣ୍ଡ ଅଞ୍ଚଳକୁ ପାଣି ପହଁଞ୍ଚି ପାରି ନ ଥିଲାବେଳେ ମହାନଦୀ କୋଇଲା କମ୍ପାନୀ, ଇବ୍ କୋଇଲା ଖଣି, ଓରିଏଣ୍ଟ କୋଇଲା ଖଣି, ତତ୍କାଳୀନ ଓରିଏଣ୍ଟ କାଗଜ କଳ, ଏଲ୍.ଏଣ୍ଡ.ଟି, ରାସ୍ତା ନିର୍ମାଣ ବେଳେ ମଧ୍ୟ ଜଳ ଭଣ୍ଡାରର ବ୍ୟାପକ ଓ ଅବାଧ ବ୍ୟବହାର କରାଯାଇଛି । ପୁନଶ୍ଚ ହୀରାକୁଦର ଇଣ୍ଡାଲ, ଅଲିଣ୍ଡ, ରି-ରୋଲିଂ ମିଲ୍, କ୍ୟାପଟିଭ ପାୱାର ପ୍ଲାଣ୍ଟ, ବରଗଡ ଡୁଙ୍ଗୁରି ଚୂନ ଖଣି, ସିମେଣ୍ଟ କାରଖାନା ଆଦିରେ ମଧ୍ୟ ହୀରାକୁଦ ଜଳ ଭଣ୍ଡାରର ବ୍ୟାପକ ଜଳ ବ୍ୟବହାର ହୋଇଛି । ଏବେ ମିତ୍ତଲ ଗ୍ରୁପ ଏକ ଷ୍ଟିଲ ପ୍ରକଳ୍ପ ପାଇଁ ଚିପିଲିମାରେ ସ୍ଥାନ ଚିହ୍ନଟ କରିଛି । ସେ ପ୍ରକଳ୍ପ ୧୦,୦୦୦ ଚାଷ ଜମି ନେବା ସଙ୍ଗେ ସଙ୍ଗେ ୨୭୦ କ୍ୟୁସେକ୍ ପାଣି ନେବ ।

ଏକ କ୍ୟୁସେକ୍ ପାଣିରେ ଅନ୍ୟୁନ ୮୦ ରୁ ୧୦୦ ଏକର ଜମିରେ ଜଳସେଚନ କରାଯାଇପାରିବ । ମରୁଡି ପରିସ୍ଥିତିରେ ଉପଯୋଗ ପାଇଁ ଜଳଭଣ୍ଡାରର ଜଳ ପାଇଁ ଧଇକାର ଅନୁମତି ଦେଉ ନ ଥିଲାବେଳେ ଅବିଭକ୍ତ ସମ୍ବଲପୁର ଜିଲ୍ଲାରେ ସରକାର ଇବ୍ ଥର୍ମାଲ୍, ସେପା,

ଷ୍ଟେରଲାଇଟ୍, ଆଦିତ୍ୟ ବିର୍ଲା ଆଦିର ଅତ୍ୟାଧୁନିକ ଆଲୁମିନା କାରଖାନା, କ୍ୟାପ୍‌ଟିଭ ପାୱାର ପ୍ଲାଣ୍ଟ, ସ୍ପଞ୍ଜ ଆଇରନ୍ କାରଖାନା ଆଦି ପାଇଁ ଜଳଭଣ୍ଡାରର ଜଳ ନେବା ପାଇଁ ଅନୁମତି ଦେଇ ରାଜ୍ୟ ସରକାର ସମଗ୍ର ଅଞ୍ଚଳକୁ ବିପର୍ଯ୍ୟୟ ଗର୍ଭକୁ ଠେଲି ଦେବାକୁ ବସିଛନ୍ତି ।

ହୀରାକୁଦ ଜଳଭଣ୍ଡାରରୁ ବନହରପାଲିସ୍ଥିତ ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ରକୁ ୫୩ କ୍ୟୁସେକ୍, ଭୂଷଣ ଲିମିଟେଡ୍‌କୁ ବର୍ତ୍ତମାନ ୧୨ ଓ ଭବିଷ୍ୟତରେ ୧୦୦ କ୍ୟୁସେକ୍, ଆଦିତ୍ୟ ଆଲୁମିନିଅମକୁ ୫୨.୭୩ କ୍ୟୁସେକ୍ ଓ ସମ୍ବଲପୁର ଡିଷ୍ଟ୍ରିବ୍ୟୁଟାରୀରୁ ଇଣ୍ଡଲ ହୀରାକୁଦର ୧୦୦ ମେଗାୱାଟ୍ ବିଶିଷ୍ଟ ତାପଜ ବିଦ୍ୟୁତ୍ କେନ୍ଦ୍ର ପାଇଁ ୧୦ କ୍ୟୁସେକ୍, ବାଉମେଲ-ଝାରସୁଗୁଡା ଏସ୍ ଏସ୍ ପି ଏଲ ସ୍ପଞ୍ଜ ଆଇରନ ଲିମିଟେଡକୁ ପ୍ରଥମ ପର୍ଯ୍ୟାୟରେ ୨୦ କ୍ୟୁସେକ, ଷ୍ଟେରେଲାଇଟକୁ ୪୦ ରୁ ୬୦ ଏମଜିଡି । ଏହିପରି ଭାବରେ ମୋଟ୍ ୪୦ କ୍ୟୁସେକ୍ ଜଳ ଯୋଗାଣ ପାଇଁ କରାଯାଇଥିବା ଦରଖାସ୍ତ ଆହୁରି ଅନୁମତି ଅପେକ୍ଷାରେ ରହିଥିବା ଜଣାପଡ଼ିଛି । ଅନେକ କମ୍ପାନୀ ଏଥିପାଇଁ ଦରଖାସ୍ତ କରିଥିବା ବେଳେ । ବହୁ ଶିଳ୍ପାନୁଷ୍ଠାନ ଚୁପ୍‌ଚାପ ପାଣି ଉଠାଇବାରେ ଲାଗିଛନ୍ତି । ପୋଟାପାଲି, ସମ୍ବଲପୁରର ରାଠି ଷ୍ଟିଲ୍ ଓ ପାୱାର ପ୍ରୋଜେକ୍ଟ ପାୱାର ଚ୍ୟାନେଲରୁ ପ୍ରାୟ ୧୦ କ୍ୟୁସେକ୍ ଜଳ ପାଇଁ ଦେଇଥିବା ଦରଖାସ୍ତ ବିଚାରାଧୀନ ରହିଛି ।

ଏ ସବୁର ଭୟାବହ ପ୍ରଭାବ ସେଚାଞ୍ଚଳ ଓ ଅଣଜଳସେଚିତ ଅଞ୍ଚଳର କୃଷି-ଅର୍ଥନୀତି ଉପରେ ପଡିବା ସହିତ ହଜାର ହଜାର ମତ୍ସ୍ୟଜୀବି, କୃଷିଜୀବି ଜୀବନ, ଜୀବିକା ହରାଇବେ । ସମ୍ବଲପୁରରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ମହାନଦୀ ଏକ ବିଷଧାରାରେ ପରିଣତ ହୋଇ ତାର ତଟ ଓ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଧନ ଓ ଜୀବନ ଉପରେ କୁ-ପ୍ରଭାବ ପକାଇବ । ଏ ସମ୍ପର୍କରେ ଏବେଠୁ ସତର୍କ ରହିବାର ଆବଶ୍ୟକତା ରହିଛି । ପରିବେଶବିତ୍ ଓ ବୈଜ୍ଞାନିକଙ୍କ ମତରେ ସ୍ପଞ୍ଜ ଆଇରନ୍ କାରଖାନାର ମାଟି ଓ ପାଣି ଉପରେ ଅତ୍ୟନ୍ତ ବିଷାକ୍ତ ପ୍ରଭାବ ପଡିଥାଏ । ଏହି ପ୍ରଦୂଷଣ ଫଳରେ ମହିଳାମାନଙ୍କ ଗର୍ଭପାତ ହେବା ସହ ନବଜାତ ଶିଶୁର ଓଜନ ମଧ୍ୟ ହ୍ରାସ ପାଇଥାଏ । ଗ୍ରାମାଞ୍ଚଳର ପ୍ରଜନନ ଶକ୍ତି ଉପରେ ଏହାର କୁପ୍ରଭାବ ସହ ସେମାନଙ୍କ ମଧ୍ୟରେ ବିଭିନ୍ନ ଶାରୀରିକ ସମସ୍ୟା ମଧ୍ୟ ଦେଖାଯିବାର ଆଶଙ୍କା ରହିଛି । କଳକାରଖାନାରେ ଇ.ଏସ୍.ପି ଲଗାଇଦେବା ପ୍ରଦୂଷଣ ସମସ୍ୟାର ସମାଧାନ ନୁହେଁ । ଇଏସ୍ପି କେବଳ କୋଇଲା ଧୂଆଁରୁ ବାହାରୁଥିବା ସସ୍‌ପେଣ୍ଡେଡ୍ ପାର୍ଟିକୁଲେଟ୍ ମେଟେରିଏଲସ୍ (ଏସ୍.ପି.ଏମ୍.) କୁ ହିଁ ପ୍ରତିରୋଧ କରିପାରେ କିନ୍ତୁ ଧୂଆଁରେ ଥିବା କାର୍ବନମନୋକସାଇଡ୍ ସଲଫର୍, ଅକସାଇଡ୍ ଭଳି ଅତ୍ୟନ୍ତ ବିପଦ୍‌ଜନକ ଗ୍ୟାସ ରହିଥିବା ଜଣାଯାଏ । ଏହାର ପ୍ରଭାବରେ ବିଭିନ୍ନ ରକମର ଫୁସ୍ ଫୁସ୍ ଜନିତ ରୋଗ, କ୍ୟାନସର, ଯକ୍ଷ୍ମା, ଶ୍ୱାସ, ବ୍ରୋଙ୍କାଇଟିସ୍, ନିମୋନିଆଁ, ଆଖି, କାନ, ନାଶା, ଚର୍ମରୋଗ ଆଦି ଅନ୍ୟତମ । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଅନୁଯାୟୀ ଏହି ଏସ୍.ପି.ଏମ୍. ର ମାତ୍ରା ୫୦ରୁ ଅଧିକ ହେଲେ ସ୍ୱାସ୍ଥ୍ୟ ପାଇଁ

କ୍ଷତିକାରକ । ମାତ୍ର ଭାରତ ସରକାର ଶିଳ୍ପପତିଙ୍କ ସ୍ୱାର୍ଥ ରକ୍ଷାପାଇଁ ଏହାର ସୀମାକୁ ୧୫୦ ଯାଏଁ ବଢେଇ ଦେଇଛନ୍ତି । ଭାରତୀୟମାନଙ୍କ ସ୍ୱାସ୍ଥ୍ୟ କଣ ଏତେ ଶସ୍ତା । ସେ ଯା ହେଉ ନିକଟରେ ହୋଇଥିବା ଏକ ସର୍ବେକ୍ଷଣରୁ ଜଣାପଡୁଛି ଯେ, ଭାରତରେ ଥିବା ସ୍ପଞ୍ଜ ଆଇରନ୍ କାରଖାନା ଗୁଡିକ ୧୫୦୦-୩୫୦୦ ଯାଏଁ ଏସ୍.ପି.ଏମ୍. ବାୟୁମଣ୍ଡଳକୁ ଛାଡୁଛନ୍ତି ।

ସେହିପରି ଆଲୁମିନିୟମ ଉତ୍ପାଦନ ପକ୍ରିୟା- ଏହାର ଖନନ, ବିଶୋଧନ ଓ ଗଳନ ଇତ୍ୟାଦି କ୍ଷେତ୍ରରେ ଗୁରୁତର ପରିବେଶ ପ୍ରଦୂଷଣ ହୋଇଥାଏ । ଇଣ୍ଡାଲ, ହୀରାକୁଦ ଫଳରେ ସମ୍ବଲପୁର ସହରରେ ଏସିଡ୍ ବର୍ଷା ଆରମ୍ଭ ହୋଇସାରିଛି । ଏ କ୍ଷେତ୍ରରେ ବାସଚ୍ୟୁତ, ସେମାନଙ୍କ ଥଇଥାନ କରାଯିବାର ଗୁରୁତର ସମସ୍ୟା ସହ ଅରଣ୍ୟ ଧ୍ୱଂସ, ଭୂମିକ୍ଷୟ, ଜଳସ୍ତର ହ୍ରାସ ଓ ଜଳପ୍ରବାହ ଉପରେ କୁପ୍ରଭାବ, ବାୟୁ ଓ ଶବ୍ଦ ପ୍ରଦୂଷଣ ଭଳି ସମସ୍ୟା ରହିଛି ।

ଆଲୁମିନିୟମ୍ ପ୍ଲାଣ୍ଟ ଯୋଗୁଁ ପରିବେଶ କ୍ଷତି ହେଉଥିବା ବ୍ୟାପାରରେ ସବୁଠାରୁ ବେଶି ଗୁରୁତର ସମସ୍ୟା ହେଉଛି ବକ୍ସାଇଟ୍‌ର ବଳକା ଅଂଶ ବା ଲାଲ କାଦୁଅ । ଏହାର ଉପରିସ୍ଥ ବହମାନ ତରଳ ଅଂଶରେ ଅତିମାତ୍ରାରେ ଆଲକାଇନ୍, କ୍ଷାରଣ ରହିଥାଏ । ତାହା ସହିତ ଏଥିରେ ଆଇରନ୍ ଅକ୍ସାଇଡ୍, ସିଲିକନ୍ ଅକ୍ସାଇଡ୍ ଟାଇଟାନିଅମ ଅକ୍ସାଇଡ୍, ଭାନାଡିୟମ, ପେଣ୍ଟାକ୍ସାଇଡ୍, ସିଲିକନ୍ ଅକସାଇଡ୍ ଓ ସୋଡିୟମ ଅକ୍ସାଇଡ୍ ଭଳି ଅନେକ ବିଷାକ୍ତ ରାସାୟନିକ ଦ୍ରବ୍ୟ ରହିଥାଏ । ଏଥିରୁ ମିଳୁଥିବା ବାଷ୍ପୀୟ ପ୍ରଦୂଷକ ମଧ୍ୟରେ ବିଷାକ୍ତ ପଲିଆରୋମେଟିକ ହାଇଡ୍ରୋ କାର୍ବନ, ଗନ୍ଧକ ଉପାଦାନ, ଫ୍ଲୋରାଇଡ୍ ଅନ୍ୟତମ ଯାହା ଜଳ ଓ ବାୟୁ ପ୍ରଦୂଷଣର ଅନ୍ୟତମ କାରକ । ବାୟୁମଣ୍ଡଳରେ ଫ୍ଲୋରାଇଡ୍ ପରିମାଣ ବୃଦ୍ଧି ଘଟିଲେ ଜଳବାୟୁର ପରିବର୍ତ୍ତନ ଦେଖାଯାଏ । ଉଦ୍ଭିଦ ଓ ପ୍ରାଣୀଜଗତ ଉପରେ ଏହାର ବିଷାକ୍ତ ପ୍ରଭାବ ପଡେ । ଜନସାଧାରଣ ଓ ପ୍ରାଣୀଜଗତ ଫ୍ଲୁରୋସି ରୋଗରେ ଆକ୍ରାନ୍ତ ହୁଅନ୍ତି । ସେହିପରି ସ୍ମେଲ୍‌ଟର ପ୍ଲାଣ୍ଟରୁ ନିର୍ଗତ ଅପରିଷ୍କାର ଜଳ, ରାସାୟନିକ ପ୍ରଦୂଷଣ, କ୍ଲୋରାଇଡ୍, ଉତନ୍ତା ପାଉଁଶ ଜନଜୀବନ ପାଇଁ ଅତ୍ୟନ୍ତ ସାଂଘାତିକ ହୋଇଥିବା ବେଳେ ଏହା ଅଞ୍ଚଳ ପାଇଁ ଅତ୍ୟନ୍ତ ମାରାତ୍ମକ । ଏଭଳି ଅବିଚାରିତ, ଲୋକବିରୋଧୀ ଦ୍ରୁତ ବିକାଶ ନାମରେ ଦ୍ରୁତ ବିନାଶକାରୀ କଳ କାରଖାନା ଯୋଗୁଁ ହଜାର ହଜାର ଲୋକ ଜମି ଓ ଜୀବିକା ହରାଇବେ । ମାନବବାଦୀ ଦୃଷ୍ଟିକୋଣରୁ ଏହି ଗୁରୁତର ସମସ୍ୟାର ଯଥାର୍ଥ ବିଶ୍ଳେଷଣ କରାଯାଇନାହିଁ । ହୀରାକୁଦ, ରେଙ୍ଗାଲି ନଦୀବନ୍ଧ, ରାଉରକେଲା ଇସ୍ପାତ କାରଖାନା ଯୋଗୁଁ ବିସ୍ଥାପନର ଅଭିଶାପ ଭୋଗି ମରି ହଜି ଗଲେଣି । କାରଖାନାଗୁଡିକରେ ସ୍ଥାନୀୟ ନିଯୁକ୍ତି ଆଶାନୁରୂପ ହୋଇପାରିନାହିଁ । ଉଦବାସ୍ତୁ ଗରିବ, ଭୂମିହୀନ ବେକାର ବାରଦ୍ୱାର ଶୁଣ୍ଡିପିଣ୍ଡା ହେଉଛନ୍ତି । କମ୍ପ୍ୟୁଟର ଓ ଆଧୁନିକ ବୈଷୟିକ ଯୁଗରେ କମ୍ପାନୀ ଗଠନର ସରଞ୍ଜାମ ଏ ଅଞ୍ଚଳରେ ନାହିଁ । ଯେଉଁ ଅଳ୍ପ ସଂଖ୍ୟାର କୁଶଳୀ କର୍ମଚାରୀ କାମରେ ଲାଗିବେ ସେମାନେ ରାଜ୍ୟ ବାହାରୁ ଆସିବେ ।

ଏହି ଅଞ୍ଚଳର ଏ ବିନାଶ ଯାତ୍ରାରେ କ୍ଷମତାସୀନ ଦଳ, ବିରୋଧୀ ଦଳ, ବଡ ବଡ ସଂଗଠନ୍ ନୀରବ ରହିଥିଲା ବେଳେ ଝାରସୁଗୁଡାର କେତେକ କ୍ଷୁଦ୍ର ନାରୀ ସଂଗଠନ ଓ ସମ୍ବଲପୁର ଓ ବରଗଡର ଚାଷୀ ସଂଗଠନ ଏହା ବିରୋଧର ପତାକା ଟେକି ଧରିବା ଆଶ୍ୱାସନାର ବିଷୟ, । ଏବେ ସି·ପି·ଆଇ· ଦଳ ହୀରାକୁଦ ନଦୀ ବନ୍ଧରୁ ଶିଳ୍ପ ପାଇଁ ଜଳନେବା ଓ ଚିପଲିମାରେ ପ୍ରସ୍ତାବିତ ମିତ୍ତଲ ଷ୍ଟିଲ ପ୍ରକଳ୍ପକୁ ବିରୋଧ କରିବାର ନିଷ୍ପତ୍ତି ନେଇଛି । ବିଳମ୍ବରେ ହେଉପଛେ ଏ ପଦକ୍ଷେପ ସ୍ୱାଗତ ଯୋଗ୍ୟ । ତେବେ ଝାରସୁଗୁଡାରେ ଏହି ପ୍ରତିବାଦର ସ୍ୱରକୁ ଆଖିରେ ରଖି ନୂଆଁ କମ୍ପାନୀମାନେ ଏବେ ଝାରସୁଗୁଡା ଓ ସମ୍ବଲପୁରର ସୀମାନ୍ତ ଓ ଆଭ୍ୟନ୍ତରୀଣ ଅଞ୍ଚଳରେ ତାଙ୍କ ଜାଲ ବିଛାଇବାରେ ଲାଗିଛନ୍ତି ।

*

# ହୀରାକୁଦ ବାସତ୍ୟୁତଙ୍କ କରୁଣ ଇତିହାସ

*ଡଃ କରୁଣାକର ସୁପକାର*

୧୫ ମାର୍ଚ୍ଚ, ୧୯୪୬ରେ ଓଡିଶାର ତତ୍କାଳୀନ ଗଭର୍ଣ୍ଣର ହର୍ଥର୍ଣ୍ଣ ଲୁଇସ ହୀରାକୁଦ ବନ୍ଧ ଯୋଜନାର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ସରକାର ଯେତେବେଳେ ହୀରାକୁଦ ବନ୍ଧ ଯୋଜନାର ସର୍ଭେ କାମ କରିବାକୁ ଗଲେ ସମ୍ବଲପୁର ତଥା ଆଖପାଖ ଗାଁରେ ଆନ୍ଦୋଳନ ଆରମ୍ଭ ହେଲା । ସଭା ସମିତି ହେଲା । ହୀରାକୁଦ ବନ୍ଧ ବିରୋଧୀ ସମିତି ଗଠିତ ହେଲା । ସଭାପତି ଥିଲେ ଡାକ୍ତର ଜନାର୍ଦ୍ଦନ ପୂଜାରୀ, ସମ୍ପାଦକ ଶ୍ରଦ୍ଧାକର ସୁପକାର । ୧୨ ନଭେମ୍ବର, ୧୯୪୬ ମସିହାରେ ସମ୍ବଲପୁର ସହରରେ ପ୍ରାୟ ଏକ ଲକ୍ଷ ମହିଳା ଓ ପୁରୁଷ ଏକତ୍ର ହୋଇ ପ୍ରତିବାଦ କରିଥିଲେ ବୋଲି ହୀରାଖଣ୍ଡ ସମାଚାରରୁ ଜଣାଯାଏ । ୨୧ ମେ, ୧୯୪୭ରେ ଡାକ୍ତର ଜନାର୍ଦ୍ଦନ ପୂଜାରୀ, ତାଙ୍କ ସହଧର୍ମିଣୀ କମଳା ପୂଜାରୀ, ଶତ୍ରୁଘ୍ନ ପଣ୍ଡା, ଶ୍ରୀନିବାସ ମିଶ୍ର ପ୍ରମୁଖ କୋର୍ଟ ସମ୍ମୁଖରେ ସତ୍ୟାଗ୍ରହ କଲେ । ଡାକ୍ତର ପୂଜାରୀ ଓ ତାଙ୍କର ସହଧର୍ମିଣୀଙ୍କୁ ଗିରଫ କରି ତିନି ମାସ ଜେଲ ଦଣ୍ଡ ଦିଆଗଲା । ୨୨-୦୫-୧୯୪୭ ରେ ସୌରେନ୍ଦ୍ରୀ ନାୟକ ଓ ଅନ୍ୟ ସତ୍ୟାଗ୍ରହୀଙ୍କ ଉପରେ ଲାଠି ମାଡ ହେଲା । କେତେକ କାରଣରୁ ପରବର୍ତ୍ତୀ ସମୟରେ ଆନ୍ଦୋଳନ ଧିମେଇ ଯାଇଥିଲା । ଶେଷରେ ୧୨ ଏପ୍ରିଲ ୧୯୪୮ରେ ପଣ୍ଡିତ ଜବାହରଲାଲ ନେହେରୁ ହୀରାକୁଦ ବନ୍ଧ ଯୋଜନାର ଭିତ୍ତିପ୍ରସ୍ତର ସ୍ଥାପନ କଲେ । ଦ୍ୱିତୀୟ ଥର ପାଇଁ ଭିତ୍ତିପ୍ରସ୍ତର ସ୍ଥାପିତ ହେଲା । ନେହେରୁ କହିଥିଲେ – If you are to suffer, you should suffer in the interest of the Country. ଆଜି ସୁଦ୍ଧା ୩୫୪୦ ପରିବାର କ୍ଷତିପୂରଣ ପାଇ ନାହାନ୍ତି ।

ନେହେରୁ ଯଦି ଜାଣିଥାଆନ୍ତେ ଯେ ତାଙ୍କର ଭବିଷ୍ୟତ ବଂଶଧର ହୀରାକୁଦ ବିସ୍ଥାପିତଙ୍କୁ ଦାଣ୍ଡର ଭିକାରୀ କରିଦେବ, ସମ୍ଭବତଃ ସେ ଏ କଥା କହି ନ ଥାନ୍ତେ । ସର୍ବପ୍ରଥମେ ୧୯୪୮, ଏପ୍ରିଲ ମାସ ୨ ତାରିଖରେ ଜମଡା ଗାଁ ଲୋକେ ତଡ଼ା ଖାଇଲେ । ଗାଁର ନାମ ସୁଦ୍ଧା ନିଶ୍ଚିହ୍ନ ହୋଇ ଆଜି ସେଠି ହୀରାକୁଦ ସହର ହୋଇଛି । ଜମଡାର ହରିଜନ ପଡାରେ ରହୁଥିଲେ ଚବିଶଟି ଆଦିବାସୀ ଓ ହରିଜନ ପରିବାର । ଗୋଟିଏ ଏକରରୁ ଅଧ ଏକର ଜମିରେ ଚାଷ କରି, ନଦୀରୁ ମାଛ ମାରି, ଢୋଲା ତିଆରି କରି ଏମାନେ ଚଳି ଯାଉଥିଲେ । ଏମାନେ ହେଲେ ଗୌତମ କାଲୋ, ଚେମା କାଲୋ, ନିରଞ୍ଜନ ଭୋଇ, ବ୍ରଜ ଭୋଇ, ବିଦ୍ୟାଧର, ସୁଆଗ, ହେମ ପ୍ରମୁଖ । ଏମାନେ ବର୍ଷେ ପର୍ଯ୍ୟନ୍ତ ପ୍ରଶାସନ ସହ ଲଢିବା ପରେ ୧୯୪୯ ଏପ୍ରିଲରେ କ୍ଷତିପୂରଣ ପାଇଲେ । ୨୭ ଏକର ୭୬ ଡେସିମିଲ ଜମି ପାଇଁ କ୍ଷତି ପୂରଣ ପାଇଲେ ମୋଟ ୫୧୯ ଟଙ୍କା ପାଞ୍ଚ ଅଣା, ଏକ ଡେସିମିଲ ଜମିକୁ ତିନିଅଣା ହିସାବରେ । ଏପରି ଅନେକ ଦୃଷ୍ଟାନ୍ତ ଅଛି । କ୍ଷତିପୂରଣ ନ ପାଇ ଅନେକ ବାସତ୍ୟୁତ ତାଙ୍କର ଭିଟାମାଟିରୁ ତଡା ଖାଇଥିଲେ । ୧୯୫୫ ଏପ୍ରିଲ ଓ ମେ

ମାଧରେ ହୀରାକୁଦ ବୁଡି ଅଞ୍ଚଳର ୫୭ଟି ଗ୍ରାମକୁ ପୋଲିସ ସାହାଯ୍ୟରେ ଖାଲି କରାଗଲା । ଅକଥନୀୟ, ଅତ୍ୟାଚାର କରାଗଲା । ଆଜି ସୁଦ୍ଧା ଓଡିଶାରେ ଯେତେ ଲୋକ ବାସଚ୍ୟୁତ ହୋଇଛନ୍ତି ସେମାନଙ୍କ ମଧ୍ୟରୁ ଏକ ଚତୁର୍ଥାଂଶରୁ ଅଧିକ ଲୋକ ହୀରାକୁଦ ବୁଡି ଅଞ୍ଚଳର । ହୀରାକୁଦ ଜଳଭଣ୍ଡାର ଯୋଗୁଁ ୨୬ .୫୦୦ ପରିବାର ବାସଚ୍ୟୁତ ହେଲେ । ବନ୍ଧ ନିର୍ମାଣ ସମୟରେ କେବଳ ଜମି ଅଧିଗ୍ରହଣ ଆଇନ ଲାଗୁ କରାଗଲା । ବାସଚ୍ୟୁତ ଲୋକଙ୍କ ଥଇଥାନ ପାଇଁ କୌଣସି ନୀତି ପ୍ରସ୍ତୁତ ହୋଇ ନ ଥିଲା । ବାସଚ୍ୟୁତ ଲୋକଙ୍କୁ ରାଜ୍ୟ ସରକାର ପ୍ରତିଶ୍ରୁତି ଦେଇଥିଲେ ଯେ, ସେମାନଙ୍କୁ ଜମି ବଦଳରେ ଜମି, ଘର ବଦଳରେ ଘର ଦିଆଯିବ । ଆଦର୍ଶ ଗାଁ ସ୍ଥାପନ କରାଯିବ । ଘୋଷଣା ଘୋଷଣାରେ ହିଁ ରହିଗଲା । ଯେଉଁମାନଙ୍କ ନାଁରେ ଜମି ପଟ୍ଟା ଥିଲା, କେବଳ ସେମାନେ ଅଳ୍ପ ଦରରେ କ୍ଷତିପୂରଣ ପାଇଲେ ।ଯେଉଁମାନଙ୍କ ନାମରେ ଜମି ପଟ୍ଟା ନ ଥିଲା ଏବଂ ଯେଉଁ ଜମିହୀନ ଲୋକେ ଧୋବା, ଭଣ୍ଡାରି, କମାର ଭାବେ କାମ କରୁଥିଲେ ସେମାନଙ୍କୁ ଥଇଥାନ କରାଗଲା ନାହିଁ । ସେମାନେ ବିନା କ୍ଷତି ପୂରଣରେ ତଡା ଖାଇଲେ । ସେମାନଙ୍କ ସଂଖ୍ୟା ୪୦ରୁ ୫୦ ହଜାର ହେବ । ସେମାନଙ୍କ ଖୋଜଖବର ନାହିଁ । ଆଜି ସୁଦ୍ଧା ୩୫୪୦ ପରିବାର କ୍ଷତିପୂରଣ ପାଇ ନ ଥିବାରୁ ଅମ୍ବାଭୋନା ବୁଡି ଅଞ୍ଚଳ ସମିତି, ରେଙ୍ଗାଲି ଓ ଲଖନପୁର ବୁଡି ଅଞ୍ଚଳ ସମିତି ଆନ୍ଦୋଳନ କରିଆସୁଛନ୍ତି । ସରକାର ଇତି ମଧ୍ୟରେ ବାସଚ୍ୟୁତମାନଙ୍କ ପାଇଁ ପୁନର୍ବାସ ଓ ଥଇଥାନ ନୀତି ପ୍ରସ୍ତୁତ କଲେଣି । ଜଣାଯାଏ ଯେ, କ୍ଷତିପୂରଣ ଦେବା ସକାଶେ ସମ୍ବଲପୁରରେ ଇତିମଧ୍ୟରେ ଏକ ସେଲ ସ୍ଥାପନ କରାଯାଇଛି । କାମ ଆରମ୍ଭ ହେଲାଣି । ହୀରାକୁଦବନ୍ଧ ନିର୍ମାଣ ସମୟରେ ଲୋକଙ୍କୁ ଯେପରି ଭାବରେ ଘରୁ ଖୋଜି ଖୋଜି ତଡା ଗଲା, ବର୍ତ୍ତମାନ କ୍ଷତିପୂରଣ ଦେବା ସକାଶେ ଲୋକଙ୍କୁ ଖୋଜି ଖୋଜି କାହିଁକି ବାହାର କରା ନ ଯିବ ? କେତେକ ବାସଚ୍ୟୁତଙ୍କୁ ୧୦୦ଟଙ୍କା ହିସାବରେ କ୍ଷତିପୂରଣ ଦିଆଯିବାକୁ ବ୍ୟବସ୍ଥା ରହିଛି ବୋଲି ଜଣାଯାଏ ।ଏହା ହାସ୍ୟାସ୍ପଦ ନୁହେଁ କି ? ହୀରାକୁଦ ବୁଡି ଅଞ୍ଚଳର ବାସଚ୍ୟୁତମାନଙ୍କ ସମସ୍ୟାର ସମାଧାନ ଆବଶ୍ୟକ । ଦେଢ଼ ଲକ୍ଷ ଲୋକଙ୍କ ଲୁହରେ ସୃଷ୍ଟି ହେଲା ହୀରାକୁଦ ଜଳଭଣ୍ଡାର । ଯେଉଁମାନେ ତଡା ଖାଇଲେ, ସେମାନେ ଦାଣ୍ଡର ଭିକାରି ହେଲେ । ସେମାନେ ବିଜୁଳିର ଆଲୁଅ ଦେଖିପାରିଲେ ନାହିଁ । ସେହି ଅଭାଗାମାନଙ୍କ ଖୋଜ ଖବର ନାହିଁ, ଅଥଚ ଏବେ ସରକାର ସେହି ଜଳଭଣ୍ଡାରରୁ ଶିଳ୍ପାନୁଷ୍ଠାନ ମାନଙ୍କୁ ଜଳଯୋଗାଣ ଆରମ୍ଭ କରିଦେଲେଣି । ଜଳଭଣ୍ଡାର ଯୋଗୁଁ କ୍ଷତିଗ୍ରସ୍ତ ଲୋକଙ୍କୁ କ୍ଷତିପୂରଣ ଦିଆସରିନାହିଁ- ଘରୋଇ କମ୍ପାନୀଙ୍କୁ ଜଳ ବିକ୍ରି କରିବା ଆରମ୍ଭ ହେଲାଣି । ଏହା କେତେ ଦୂର ଯୁକ୍ତିଯୁକ୍ତ ।

# ହୀରାକୁଦ ଜଳଭଣ୍ଡାର ଉଦ୍ୟୋଗପତିଙ୍କ ହାତରେ ଟେକି ଦିଆନଯାଉ

ଇଂ କରୁଣାକର ସୁପକାର

ବିଭିନ୍ନ ଶିଳ୍ପସଂସ୍ଥାକୁ ହୀରାକୁଦ ଜଳଭଣ୍ଡାରରୁ ସରକାରଙ୍କ ଜଳଯୋଗାଣ ନିଷ୍ପତ୍ତି ଗୁରୁତର ବିବାଦର ସୂତ୍ରପାତ କରିଛି । ଏହାଦ୍ୱାରା ଜଳସେଚନ ବାଧାପ୍ରାପ୍ତ ହେବା ସହ ଅନ୍ୟାନ୍ୟ ସମସ୍ୟା ସୃଷ୍ଟି ହେବାର ଆଶଙ୍କା କରାଯାଇଥିବା ବେଳେ ସରକାର ଏହାକୁ ଅସ୍ୱୀକାର କରୁଛନ୍ତି । ଗତବର୍ଷ ଜୁଲାଇ ମାସରେ ତତ୍କାଳୀନ ଜଳସଂପଦ ବିଭାଗ ରାଷ୍ଟ୍ରମନ୍ତ୍ରୀଙ୍କ କହିବା ଅନୁସାରେ ଜଳଭଣ୍ଡାରରୁ ଶିଳ୍ପସଂସ୍ଥା ଗୁଡିକୁ ପାଣି ଦେଲେ ଚାଷୀମାନଙ୍କ ପାଇଁ କୌଣସି ନିଅଣ୍ଟିଆ ପରିସ୍ଥିତି ସୃଷ୍ଟି ହେବ ନାହିଁ ମାତ୍ର ବାସ୍ତବରେ ନିଅଣ୍ଟିଆ ପରିସ୍ଥିତି ସୃଷ୍ଟି ହେବ ଏବଂ ନିଶ୍ଚିତ ଭାବରେ ରବି ଜଳସେଚନ ବାଧାପ୍ରାପ୍ତ ହେବ ।

ହୀରାକୁଦ ଜଳଭଣ୍ଡାର ଏସିଆର ବୃହତ୍ତମ କୃତ୍ରିମ ହ୍ରଦ । ଅନ୍ୟ ଜଳଭଣ୍ଡାର ଅପେକ୍ଷା ବଡ ହେଲେ ସୁଦ୍ଧା ବାସ୍ତବିକ ନିଜ ଅବବାହିକା ପାଇଁ ଏହା ଖୁବ ଛୋଟ । ଏହି ଜଳଭଣ୍ଡାରର ଗଭୀରତା ୧୩୦ ଫୁଟ୍ ହୋଇଥିବା ବେଳେ ଏହାର କେବଳ ୪୦ ଫୁଟ୍ ଉପଯୋଗୀ । ଏହାର ଜଳପତ୍ତନ ୬୩୦ ଫୁଟ ଆର.ଏଲ. ଓ ଶୂନ ଜଳପତ୍ତନ ୫.୯୦ ଫୁଟ ଆର.ଏଲ. । ଏହି ୪୦ ଫୁଟରୁ ବର୍ଷକ ମଧ୍ୟରେ ୪ ଫୁଟ୍ ପାଣି ବାଷ୍ପ ହୋଇ ନଷ୍ଟ ହୋଇଯାଏ । ବିଭିନ୍ନ କାରଣରୁ କେତେକ ବର୍ଷରେ ନଭେମ୍ବର ୧ ତାରିଖ ସୁଦ୍ଧା ଜଳପତ୍ତନ ୬୩୦ ଫୁଟକୁ ମଧ୍ୟ ପହଁଞ୍ଚି ପାରେ ନାହିଁ । ଅନ୍ୟ ପକ୍ଷରେ ପଟୁମାଟି ଯୋଗୁଁ ଏହାର ଜଳଧାରଣ କ୍ଷମତା ହ୍ରାସ ପାଉଛି । ୨୦୦୨ ମସିହା ସୁଦ୍ଧା ଜଳଭଣ୍ଡାରର ୨୭ ଭାଗ ପଟୁମାଟିରେ ପୋତି ହୋଇଗଲାଣି । ପ୍ରତ୍ୟେକ ବର୍ଷ ଶତକଡା ୦.୪ ଭାଗ ଜଳଧାରଣ କ୍ଷମତା ଏହି କାରଣରୁ କମି କମି ଯାଉଛି । ବର୍ଷକ ୧୦୦ ବର୍ଗ କିଲୋମିଟରରେ ୧୩୦ ଏକର ଫୁଟ୍ ପଟୁମାଟି ଜମିଯାଉଛି । ହୀରାକୁଦ ଉପରମୁଣ୍ଡରେ ବୃଷ୍ଟିପାତ ମଧ୍ୟ ହ୍ରାସ ପାଇଛି । ଗତ ୧୯୫୮ରୁ ୨୦୦୩ ପର୍ଯ୍ୟନ୍ତ ବୃଷ୍ଟିପାତ ମଧ୍ୟ ହ୍ରାସ ପାଇଛି । ଗତ ୧୯୫୮ ରୁ ୨୦୦୩ ପର୍ଯ୍ୟନ୍ତ ବୃଷ୍ଟିପାତ ହାର ଅନୁଧ୍ୟାନ କଲେ ଜଣାଯାଏ ଯେ, ବାର୍ଷିକ ହାରହାରି ବୃଷ୍ଟିପାତ ୧୧୩୨ ମିଲିମିଟରକୁ କମିଛି । ପୁଣି ଜଳଭଣ୍ଡାରର ଜଳପତ୍ତନ ରେକର୍ଡ ତର୍ଜମା କଲେ ଜଣାଯାଏ ଯେ ପ୍ରତି ବର୍ଷ ହୀରାକୁଦ ଜଳଭଣ୍ଡାରର ଜଳପତ୍ତନ ନଭେମ୍ବର ୧ ତାରିଖରେ ଯେ ୬୩୦ ଫୁଟ ରହିବ ତାହା କେହି ଭବିଷ୍ୟବାଣୀ କରିପାରିବେ ନାହିଁ । ତେଣୁ ଅନୁଭୂତିକୁ ନେଇ ଗଣନା କରାଯାଉ । ଜଳସେଚନକୁ ବଳି ଦେଇ ଶିଳ୍ପାନୁଷ୍ଠାନଗୁଡିକୁ ଜଳଯୋଗାଣ କରାନଯାଉ । କଳ-କାରଖାନାକୁ ଜଳଯୋଗାଣ କଲେ ସେହି କାରଖାନରୁ ବର୍ଜ୍ୟବସ୍ତୁ ନିଷ୍କାସିତ ହୋଇ ଜଳଭଣ୍ଡାରରେ ପ୍ରବେଶ କରିବ ଓ ଜଳ ପ୍ରଦୂଷିତ ହେବା ସହ ଜଳଧାରଣ କ୍ଷମତା ହ୍ରାସ ପାଇବ । ଏହା ଦ୍ୱାରା ଆମେ ବିପଦକୁ ଆମନ୍ତ୍ରଣ କରୁଛୁ ।

ହୀରାକୁଦ ବନ୍ଧ ଯୋଜନାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ବନ୍ୟା ନିୟନ୍ତ୍ରଣ । ଅନ୍ୟ ଉଦ୍ଦେଶ୍ୟ ଥିଲା ଜଳସେଚନ, ବିଦ୍ୟୁତ ଉତ୍ପାଦନ ଓ ମାଛ ଚାଷ । କିନ୍ତୁ କେବେହେଲେ ଶିଳ୍ପ ଅନୁଷ୍ଠାନଗୁଡିକୁ ଜଳଯୋଗାଣ କରିବା ଚିନ୍ତା କରାଯାଇନଥିଲା । ୨୦୦୫ ରେ ରାଜ୍ୟ ସରକାର ସ୍ଥିର କଲେ ଯେ, ହୀରାକୁଦ ଜଳଭଣ୍ଡାରରୁ ବିଭିନ୍ନ ଶିଳ୍ପସଂସ୍ଥାଗୁଡିକୁ ୦.୩୫୦ ମିଲିଅନ ଏକର ଫୁଟ ଜଳ ଯୋଗାଇ ଦିଆଯିବ । ୨୦୦୫ ପୂର୍ବରୁ ଶିଳ୍ପାନୁଷ୍ଠାନ ଗୁଡିକୁ ଅଳ୍ପମାତ୍ରାରେ ଜଳ ଯୋଗାଇ ଦିଆଯାଇଥିଲା । ଏବେ ଦ୍ରୁତ ଶିଳ୍ପାୟନ ନାମରେ ହୀରାକୁଦ ଜଳଭଣ୍ଡାରର ଉଦ୍ଦେଶ୍ୟ ଉଲଂଘନ କରାଯାଉଛି ।

ମୂଳ ଯୋଜନା ଅନୁଯାୟୀ ବିଦ୍ୟୁତ ବିଭାଗ ସକାଶେ ଜଳଭଣ୍ଡାରରେ ନଭେମ୍ବରରୁ ଜୁନ ମଧ୍ୟରେ ଯେତିକି ଜଳ ଗଚ୍ଛିତ ରଖାଯାଉଥିଲା, ସେତିକିରେ ସେହି ମାସମାନଙ୍କରେ ଅନ୍ତତଃପକ୍ଷେ ୪୩୩ ମିଲିଅନ ୟୁନିଟ୍ ବିଦ୍ୟୁତ ଉତ୍ପାଦନ କରିବା ସମ୍ଭବ ହେଉଥିଲା । କୌଣସି କାରଣରୁ ଜଳରାଶି କମିଗଲେ ଜଳସେଚନକୁ ଅଗ୍ରାଧିକାର ଦେଇ ଆନୁପାତିକ ଭାବେ ବିଦ୍ୟୁତ ଉତ୍ପାଦନ କମେଇ ଦିଆଯାଏ । ଗତ ୨୦୦୫ ରେ ସରକାର ସ୍ଥିର କରିଛନ୍ତି ଯେ ଶିଳ୍ପାନୁଷ୍ଠାନମାନଙ୍କୁ ୦.୩୫୦ ମିଲିଅନ ଏକର ଫୁଟ ଜଳ ଯୋଗାଇଦେବେ ଓ ବିଦ୍ୟୁତ ଉତ୍ପାଦନ ସକାଶେ ମାତ୍ର ୧.୮୬୯ ମିଲିଅନ ଏକର ଫୁଟ ଜଳ ରଖିବେ । ନଭେମ୍ବରରୁ ଜୁନ ମଧ୍ୟରେ ବିଦ୍ୟୁତ ଉତ୍ପାଦନ ୨୩୫ ମିଲିଅନ ୟୁନିଟରେ ସୀମିତ ରହିବ । ସରକାର ସ୍ୱୀକାର କରନ୍ତି ବିଦ୍ୟୁତ ଉତ୍ପାଦନ କମିଯିବ ଓ ଡେଲଟା ଅଞ୍ଚଳରେ ରବି ଜଳସେଚନ ବାଧାପ୍ରାପ୍ତ ହୋଇପାରେ । ଗତ କିଛି ବର୍ଷ ମଧ୍ୟରେ ଓଡିଶା ହାଇଡ୍ରୋ କର୍ପୋରେଶନ, ବୁର୍ଲା ପାୱାର ହାଉସର ୪ଟି ୟୁନିଟ୍ ମରାମତି ଓ ନବୀକରଣ କରିଛନ୍ତି । ଆହୁରି ୨ ଟି ୟୁନିଟ ମରାମତି ଓ ନବୀକରଣ ଅପେକ୍ଷାରେ । ନଭେମ୍ବରରୁ ଜୁନ ମଧ୍ୟରେ ଆବଶ୍ୟକ ଜଳ ନ ମିଳିଲେ ସରକାରୀ ସଂସ୍ଥା ଓଡିଶା ହାଇଡ୍ରୋ କର୍ପୋରେସନ ଅଯଥା କ୍ଷତିଗ୍ରସ୍ତ ହେବ । କ୍ଷତି ହେଲେ ପୁଞ୍ଜି ଋଣ ସୁଝିବାକୁ ପଡିବ । ସେଥିପାଇଁ କାହାକୁ ଦାୟୀ କରାଯିବ ?

ହୀରାକୁଦ ବନ୍ଧ ଯୋଜନାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଥିରୁମଲୁ ଆୟାଙ୍ଗାର ଜଳଭଣ୍ଡାରର କାର୍ଯ୍ୟ ପ୍ରଣାଳୀ ଉପରେ ନିଜର ସୁଚିନ୍ତିତ ପରାମର୍ଶ ସହ ଏକ ପୁସ୍ତିକା ପ୍ରକାଶ କରିଥିଲେ । ତାଙ୍କ ମତରେ ହୀରାକୁଦ ଯୋଜନା ପ୍ରଥମେ ବନ୍ୟା ନିୟନ୍ତ୍ରଣ ସକାଶେ ପରିକଳ୍ପିତ ହୋଇଥିଲା । ଯୋଜନାକୁ ଅଧିକ ଫଳପ୍ରଦ ଓ ଲାଭଜନକ କରିବା ପାଇଁ ଜଳସେଚନ ଓ ବିଦ୍ୟୁତ ଉତ୍ପାଦନକୁ ଯୋଡି ଦିଆଗଲା । ବନ୍ୟା ନିୟନ୍ତ୍ରଣ ଓ ଜଳସେଚନ କାର୍ଯ୍ୟପ୍ରଣାଳୀ ସ୍ଥିର କରିବା ସଙ୍ଗେ ସଙ୍ଗେ ସମ୍ବଲପୁର ସହରକୁ ଜଳସ୍ରୋତର ବ୍ୟବସ୍ଥା ସମ୍ବନ୍ଧରେ ମଧ୍ୟ ସେ ପରାମର୍ଶ ଦେଇଛନ୍ତି । ହୀରାକୁଦ ବନ୍ଧ ନିର୍ମାଣ ହେଲା ପରେ ସମ୍ବଲପୁର ସହର ପାଖ ମହାନଦୀରେ ଆଉ ଜଳସ୍ରୋତ ରହିଲା ନାହିଁ । ନଭେମ୍ବରରୁ ଜୁନ ମଧ୍ୟରେ ଜଳସ୍ରୋତର ଅଭାବରୁ ସମ୍ବଲପୁର ସହରବାସୀ ଆନ୍ଦୋଳନ

କଲେ । ତେଣୁ ଜଳଭଣ୍ଡାରରୁ ଅବିରତ ଭାବେ ପାଣି ଛାଡିବାକୁ କିମ୍ବା ଗ୍ରୀଷ୍ମଋତୁରେ ସପ୍ତାହକ ଦିନେ ୧୦୦ କ୍ୟୁସେକ ପାଣି ଛାଡିବାକୁ ସେ ପରାମର୍ଶ ଦେଇଛନ୍ତି । ଦୁଃଖର କଥା ତାଙ୍କର ପରାମର୍ଶ ଆଜି ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେଲା ନାହିଁ । ଜଳସ୍ରୋତ ଅଭାବରୁ ଓ ମହାନଦୀକୁ ସହରର ସବୁ ମଇଳା ପାଣି ପ୍ରବେଶ କରୁଥିବାରୁ ପୂର୍ବଭଳି ଜଳସ୍ରୋତ ରହିଲେ ମଇଳା ଅଂଶ ଅନେକ ମାତ୍ରାରେ ବୋହିଯାଆନ୍ତା । ଆଜି ମହାନଦୀ ପାଣି -ଡି- ଶ୍ରେଣୀକୁ ଖସି ଆସିଛି । ଗତ ୫୦ ବର୍ଷ ହେଲା ମହାନଦୀ କୂଳ ସମ୍ବଲପୁର ସହରବାସୀ ଜଳକଷ୍ଟ ଭୋଗି ଆସୁଛନ୍ତି । ଶ୍ରୀ ଆୟାଙ୍ଗାରଙ୍କ ପରାମର୍ଶ ଅନୁଯାୟୀ ଏବେ ଅବିରତ ପାଣିଛାଡି ଜଳସ୍ରୋତ ସୃଷ୍ଟି କରାଯାଉ । ବର୍ଷକ ଭିତରେ ୨୪ ଦିନ ସକାଶେ ଦୈନିକ ୧୦୦ କ୍ୟୁସେକ ପାଣି ହିସାବରେ ପାଣି ଛାଡିବାକୁ ଯଦି ପାଣି ନାହିଁ, ତାହେଲେ ବର୍ଷ ତମାମ ୩୬୫ ଦିନ ସକାଶେ ୪୭୮ କ୍ୟୁସେକ ପାଣି ଆସିଲା କେଉଁଠୁ ?

କେନାଲ ରକ୍ଷଣାବେକ୍ଷଣ ଅଭାବରୁ ଓ ଅନ୍ୟ କେତେକ କାରଣରୁ ଏବେ ହୀରାକୁଦ ଜଳସେଚିତ ଅଞ୍ଚଳର ଟେଲ ଏଣ୍ଡ ରେ ପ୍ରାୟ ୨୦ ହଜାର ଏକର ଜମିକୁ ଆଗ ଭଳି ପୁଣି ଥରେ କେମିତି ପାଣି ମାଡିବ, ସେହି ବିଷୟରେ ସରକାର ଚିନ୍ତା କରୁନାହାନ୍ତି । ଛୋଟ ଛୋଟ ଚାଷୀମାନଙ୍କୁ ୧ ରୁ ୨ ଏଚପି ପମ୍ପ ବସାଇ ଜଳଭଣ୍ଡାର ତଥା କେନାଲରୁ ପାଣି ଉଠେଇବାକୁ ଅନୁମତି ଦିଆଯାଉନାହିଁ । ଅଥଚ ସେହି ଜଳଭଣ୍ଡାରୁ ଶିଳ୍ପାନୁଷ୍ଠାନଗୁଡିକ ୪୭୮ କ୍ୟୁସେକ୍ ପାଣି ଉଠେଇବାକୁ ଅନୁମତି ଦିଆଯାଉଛି । ଏହା କେତେଦୂର ଯୁକ୍ତିଯୁକ୍ତ ।

୪୭୮ କ୍ୟୁସେକ ପାଣିରେ ପ୍ରାୟ ୪୭୮୦୦ ଏକର ଜମିରେ ରବିଚାଷ କରାଯାଇପାରିବ । ସରକାର ଏବେ ରବି ଜଳସେଚନ ପାଇଁ ଏକ ଏକର ଜମି ପିଛା ୧୫ରୁ ୨୦ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରୁଛନ୍ତି । ଏକ ଏକର ପିଛା ଅତି କମ୍‌ରେ ୧୦ ଲକ୍ଷ ଟଙ୍କା ଖର୍ଚ୍ଚ କଲେ, ୪୭୮୦୦ ଏକର ଜମିରେ ରବିଚାଷ ସୁବିଧା ପାଇଁ ୪୭୮୦୨ କୋଟି ଟଙ୍କା ଆବଶ୍ୟକ ହୋଇଥାନ୍ତା । ଯଦି କର୍ତ୍ତୃପକ୍ଷ ଭାବୁଛନ୍ତି ହୀରାକୁଦ ଜଳଭଣ୍ଡାରରେ ୪୭୮ କ୍ୟୁସେକ ଜଳ ବଳକା ଅଛି, ତାହେଲେ ଆହୁରି ୪୭୮୦୦ ଏକର ଜମିରେ ଜଳସେଚନ ବ୍ୟବସ୍ଥା କରନ୍ତୁ । ଅତି କମ୍ ଅର୍ଥ ବିନିଯୋଗ କଲେ ଏହା ସମ୍ଭବ ହେବ । ଫଳରେ ସେହି ଜମି ଉପରେ ନିର୍ଭର ୧୬ ହଜାର ପରିବାର ଉପକୃତ ହେବେ । ଯେଉଁ କଳକାରଖାନା ୪୭୮ କ୍ୟୁସେକ୍ ଜଳ ବ୍ୟବହାର କରିବେ, ସେମାନେ ସେତିକି ପରିବାରକୁ ଚାକିରି ଯୋଗାଇ ପାରିବେ ନାହିଁ । ସୁତରାଂ ଜଳସେଚନକୁ ପ୍ରାଧାନ୍ୟ ଦିଆଯାଉ । ୧ ହେକ୍ଟର ଜମିକୁ (୨.୫ ଏକର) ରେ ୮ ରୁ ୧୦ ଜଣ ଚାଷୀ ଓ କୃଷି ଶ୍ରମିକ ନିଯୁକ୍ତି ପାଇଥାନ୍ତି । ଯଦି ଜଳସେଚିତ ଜମି ହୁଏ ତେବେ ତାହା ଦି ଗୁଣ ଲୋକଙ୍କୁ କାମ ଯୋଗାଇଦେଇ ପାରିବ । ଏବେ ଉପସଂହାରକୁ ଆସିବା । କଳକାରଖାନା ଗଢି ଉଠିବ । ଆମ ମତରେ ଦ୍ରୁତ

ଶିଳାନ୍ୟାସ ଆଳରେ ପରିବେଶ ଧ୍ୱଂସ ନ ହେଉ ଓ ଜଳଭଣ୍ଡାରର ଉପଯୋଗିତାକୁ ହ୍ରାସ କରାନଯାଉ । ଦେଢ଼ ଲକ୍ଷ ବାସନ୍ଥ୍ୟାତଙ୍କ ଲୁହରେ ଏହି ଜଳଭଣ୍ଡାରର ସୃଷ୍ଟି । ଜଳଭଣ୍ଡାର ଯୋଗୁଁ କ୍ଷତିଗ୍ରସ୍ତ ହୋଇଥିବା ଲୋକଙ୍କୁ ଏ ଯାଏଁ କ୍ଷତିପୂରଣ ଦିଆଯାଇନଥିବା ବେଳେ ଘରୋଇ କମ୍ପାନି ଗୁଡିକୁ ଏହାର ଜଳ ବିକିବା ଆରମ୍ଭ ହୋଇଗଲାଣି । ଏହା କେତେ ଦୂର ଯୁକ୍ତିଯୁକ୍ତ ?

xxxxxx

## ଗଣତନ୍ତ୍ର

♦ ଦୁର୍ଗାପ୍ରସାଦ ପଣ୍ଡା

ଗଣତନ୍ତ୍ର ଖାକୀ ପୋଷାକ ପିନ୍ଧି
ଦର୍ଜାବାଡ଼େଇ ପାରେ ରାତି ଅଧରେ
ଲମ୍ବି ଯାଇଥିବା ଜିଭରେ
ପ୍ରତିବାଦର ହାତ ଖୋଜିବାକୁ

ଗଣତନ୍ତ୍ର ଲୋକଙ୍କୁ
ପୋକରେ ପରିଣତ କରିଦେଇପାରେ
କଲମ ମୁନରେ, ରାତାରାତି
କୌଣସି ଜୋକର ବି ହୋଇଯାଇପାରେ ମନ୍ତ୍ରୀ ।

ଗଣତନ୍ତ୍ର ଛଡ଼େଇନେଇପାରେ
ମୁହଁରୁ ଭାତଥାଳି
ନ୍ୟାୟ ବଦଳରେ ଦେଇପାରେ ଗୁଳି ।

ପରାକ୍ରମର ଭୂତଳ ପ୍ରାସାଦ ଭିତରୁ
ଆବିଷ୍କୃତ ହୋଇପାରେ ଜଘନ୍ୟ ପାପର
କୁଢ଼କୁଢ଼ କଙ୍କାଳ ।

ଗଣତନ୍ତ୍ର ପ୍ରଲୋଭନର ଗନ୍ଧ ଶୁଙ୍ଘାଇ
ଲୋକଙ୍କୁ ଅଚେତ କରିପାରେ
ଗଣତନ୍ତ୍ର ଲୋକଙ୍କ ଗଣ୍ଡିତଳେ
ବୋମା ଖଞ୍ଜି ଦେଇ
ଠିକ୍ ତା ପରଦିନ ସେମାନଙ୍କ ମୃତ୍ୟୁରେ
ଶୋକପ୍ରକଟ କରିପାରେ
ମଲା ଲୋକଙ୍କ ହାତରୁ ପାପୁଲି ସୁଦ୍ଧା
କାଟିନେଇପାରେ ।

ଏ ମହାନ ଗଣତନ୍ତ୍ରକୁ ନେଇ
ଆମର ଗର୍ବ କରିବାର ଯଥେଷ୍ଟ କାରଣ
ରହିଛି ।

xxx

# ଶିଳ୍ପ ନାମରେ ସଂପଦର ଲୁଟ ଓ ପ୍ରକୃତିର ଧ୍ୱଂସ

ଉତ୍କଳ ଆଲୁମିନା

◆ କାଶୀପୁର ପ୍ରକଳ୍ପ ଯୋଗୁଁ ଇନ୍ଦ୍ରାବତୀ ଡ୍ୟାମର ପାଣି ବିଷାକ୍ତ ହେବ ଓ ଡ୍ୟାମର ଆୟୁଷ କମିବ । ◆ ୨୦-୩୦ ହଜାର ଗୋରୁଗାଈଙ୍କ ଗୋଚାରଣ ଭୂମି ନଷ୍ଟ ହେବ । ◆ ଏ ଅଞ୍ଚଳର ଏକମାତ୍ର ବାଗ୍ରିଝୋଲା ଡ୍ୟାମ ର ପାଣି ଚାଷୀଙ୍କ ହାତରୁ କମ୍ପାନୀ ହାତକୁ ଚାଲିଯିବ । ◆ ଯେ ଅଂଚଳର ଜୀବନରେଖା 'ବଡ଼ନଦୀ' ପ୍ରଦୂଷିତ ହେବ । ଏହା ଏକ ଛୋଟ ନଦୀ ହୋଇଥିବା ହେତୁ ସମୟକ୍ରମେ ଶୁଖିଯିବ । ବକ୍ସାଇଟ ଭରା ପାହାଡ଼ ଯୋଗୁଁ ଯେ ଅଂଚଳରେ ଝରଣା ବହୁଛି । ଖଣି ଖନନ ଯୋଗୁଁ, ସେ ସବୁ ଶୁଖି ସାରା ଅଂଚଳ ମରୁଭୂମି ପ୍ରବଣ ହୋଇଯିବ । ◆ କଂପାନୀ ଲାଭ ପାଇବ ୨ ଲକ୍ଷ ୮୮ ହଜାର କୋଟି । ସରକାରଙ୍କୁ ଖଣି ଶେଷ ପର୍ଯ୍ୟନ୍ତ ରାଜସ୍ୱ ମିଳିବ ମାତ୍ର ୨୦୦୦ କୋଟି ଟଙ୍କା । ◆ ଏମ୍ପଲୟମେଣ୍ଟ ଏକ୍ସଚେଞ୍ଜ ଗଲା ଡିସେମ୍ବର ୩୧, ୨୦୦୦ ସୁଦ୍ଧା ସମଗ୍ର ରାୟଗଡା ଜିଲ୍ଲାରେ ୧୩,୧୩୯ ଲୋକ ରେଜିଷ୍ଟ୍ରି କରିଥିଲେ । କେବଳ ୨୦୦୦ରେ ୨୩୯୬ ଶିକ୍ଷିତ ଯୁବକ ଯୁବତୀ ପଂଜିକୃତ କରିଥିଲେ ।

ଲାଂଜିଗଡ଼ର ବେଦାନ୍ତ ପ୍ରକଳ୍ପ

◆ 'ବେଦାନ୍ତ' ପ୍ରକଳ୍ପ ଯୋଗୁଁ ନିୟମଗିରି, ଖଣ୍ଡୁଆଲ୍‌ମାଳୀର ରିଜର୍ଭ ଜଙ୍ଗଲ ଓ ଜୈବ ବିବିଧତା ନଷ୍ଟ ହୋଇଯିବ । ଔଷଧୀୟ ଗୁଳ୍ମ, ବନୌଷଧି ଶେଷ ହୋଇଯିବ । ◆ ନାଗାବଳୀ ଓ ବଂଶଧାରା ନଦୀ ବିଷାକ୍ତ ହେବ ଓ ପରେ ଶୁଖିଯିବ । ନଦୀ ଦି କଡ଼ରେ ଥିବା ଗ୍ରାମବାସୀମାନେ ସ୍ୱଚ୍ଛ ନଦୀ ଜଳରୁ ବଂଚିତ ହେବେ । ◆ କଳାହାଣ୍ଡି ଏକ ସଂପୂର୍ଣ୍ଣ ବୃଷ୍ଟିଛାୟା ଅଂଚଳରେ ପରିଣତ ହେବ । କାରଣ ମେଘମାନ ପିଟି ହୋଇ ବର୍ଷା ହେଉଥିବା ନିୟମଗିରିକୁ ଖୋଳି ନିଆଯିବ । ◆ ଅନନ୍ୟ ଝରଣିଆ, ଡ଼ଙ୍ଗରିଆ କନ୍ଧ ସମୁଦାୟ ବିସ୍ଥାପିତ ହେବେ । ତାଙ୍କ ସହ ଏକ ଅନନ୍ୟ ସଂସ୍କୃତି ଲୋପ ପାଇଯିବ । ◆ 'ବେଦାନ୍ତ' ତେଲ ନଦୀର ପାଣି ନେଉଥିବା ହେତୁ କାଳକ୍ରମେ ସେ ନଦୀ ଶୁଖି କଳାହାଣ୍ଡିର କେସିଙ୍ଗା ଅଂଚଳର ଲୋକେ ପାନୀୟ ଜଳରୁ ବଂଚିତ ହେବେ । ◆ ଆମ ଦେଶ ଓ ରାଜ୍ୟର ଚାହିଦାରୁ ବେଶି ଆଲୁମିନା ଉତ୍ପାଦନ ହେଉଛି ଏବଂ ବିଦେଶକୁ ମଧ୍ୟ ରପ୍ତାନୀ ହେଉଛି । ଏ ସବୁ ପ୍ରକଳ୍ପ ସବୁ ରପ୍ତାନୀ ଭିତ୍ତିକ । ସବୁ ପ୍ରକଳ୍ପରେ ବହୁ ରାଷ୍ଟ୍ରିୟ କଂପାନୀ ଜଡ଼ିତ । ୬୦ ଶତକଡ଼ା ରୁ ଅଧିକ ଆଲୁମିନା ସାମରିକ କାମରେ ବ୍ୟାବହୃତ ହେଉଛି ।

## ପୋସ୍କୋ

♦ ଓଡ଼ିଶାରେ ସମସ୍ତ ଗଚ୍ଛିତ ଲୁହାପଥର ଆସନ୍ତା ୪୫ ବର୍ଷରେ ଶେଷ ହୋଇଯିବ ।

♦ କେନ୍ଦୁଝରର ଗନ୍ଧମାର୍ଦ୍ଧନ ପାର୍ବତ୍ୟମାଳା ଓ ସୁନ୍ଦରଗଡ଼ ଖଣି ଖନନ ଯୋଗୁଁ ବହୁତ ଜଙ୍ଗଲ ଜମି ଧ୍ୱଂସ ହେବ । ହଜାର ହଜାର ଆଦିବାସୀ ସବୁଦିନ ପାଇଁ ଜୀବିକା ହରାଇବେ ।

♦ ପାରାଦ୍ୱୀପରେ ନୂତନ ବନ୍ଦର ଯୋଗୁଁ ହଜାର ହଜାର ମତ୍ସ୍ୟଜୀବୀ ଜୀବିକା ହରାଇବେ । ଏ ପ୍ରକଳ୍ପ ୨୫୯୨୦୦ ନିୟୁତ ଗ୍ୟାଲେନ ପାଣି କଟକର ଯୋବ୍ରା ଆନିକଟରୁ ନେବ, ଯାହାକୁ ଏକଦା ନଅଙ୍କ ଦୁର୍ଭିକ୍ଷର ଦୁଃଖ ଦେଖି ନିର୍ମାଣ କରାଯାଇଥିଲା । ତାଳଦଣ୍ଡା କେନାଲ ଉପରେ ନିର୍ଭରଶୀଳ ଚାଷୀଙ୍କୁ ଚାଷକାମରୁ ବଂଚିତ କରି ଶିଳ୍ପପାଇଁ କେନାଲ ପାଣିକୁ ବ୍ୟବହୃତ କରାଯିବ । ଏପରିକି ପଶ୍ଚିମାଂଚଳର ଜଳସେଚନ ପ୍ରଭାବିତ ହେବ । ପ୍ରଥମ ପର୍ଯ୍ୟାୟରେ ମହାନଦୀରୁ ୫୦ ଲକ୍ଷ ଘନ ମିଟର ଓ ପରେ ତିନି ନିୟୁତ ଘନ ମିଟର ଜଳ ନେବ । କଟକ, କେନ୍ଦ୍ରାପଡ଼ା, ଜଗତସିଂହପୁର ଓ ପୁରୀ ଜିଲ୍ଲାର ଜଳସେଚନ ପ୍ରଭାବିତ ହେବ । ♦ ଜଟାଧାରୀ ମୁହାଣରେ ପୋସ୍କୋର ଘରୋଇବନ୍ଦର ହେଲେ ଓ ସାରା ଅଂଚଳର ଜଳସ୍ରୋତ କଂପାନୀ ଅଧୀନକୁ ଗଲେ ତଥା ପ୍ରଦୂଷିତ ହେଲେ ହଜାର ହଜାର ମତ୍ସ୍ୟଜୀବି ଜୀବିକା ହରାଇବେ ।

♦ ପୋସ୍କୋ ହାତକୁ ୬୫୦୦ ରୁ ୭୦୦୦ ଏକର ଚାଷ ଜମି ଚାଲିଯିବ । ଓଡିଶାର ପାନବରଜ ଅର୍ଥନୀତିର ମୃତ୍ୟୁ ଘଟିବ । ପୋସ୍କୋ, ସମୁଦାୟ ନିଯୁକ୍ତି ସଂପର୍କରେ ନୀରବ । ରାଜ୍ୟ ସରକାର ନିଜେ ଦାବୀ କରୁଛନ୍ତି, ୧୩,୦୦୦ ଲୋକଙ୍କୁ ସିଧାସଳଖ ଓ ପରୋକ୍ଷ ଭାବରେ ୩୫,୦୦୦ ଲୋକଙ୍କୁ ନିଯୁକ୍ତି ମିଳିବ । ଯଦିଓ ରିପୋର୍ଟ ଏ ସଂବଧରେ ଚୁପ୍ । ♦ ପାରାଦ୍ୱୀପ ବନ୍ଦର ଓ ସେଠି କର୍ମରତ ଶ୍ରମିକଙ୍କ ଭବିଷ୍ୟତ ଅସୁରକ୍ଷିତ ହେବ । ଧାମରା ଠାରେ ଟାଟା ଓ ଏଲ.ଏଣ୍ଡ.ଟି.ର ଯୌଥ ମାଲିକାନାରେ ନିର୍ମିତ ହେବାକୁ ଯାଉଥିବା ବନ୍ଦର ଏଇ ପରିସ୍ଥିତିକୁ ଆହୁରି ଜଟିଳ କରିବ ।

## ସ୍ପଞ୍ଜ ଆଇରନ୍

♦ ଗୋଟିଏ ସ୍ପଞ୍ଜ ଆଇରନ ଫେକ୍ଟ୍ରିରେ ସ୍ଥାୟୀ ନିଯୁକ୍ତି ସଂଖ୍ୟା ୧୦୦ ତଳକୁ । ଏମାନଙ୍କ ଆୟୁଷ ବେଶୀ ହେଲେ ୨୦ ବର୍ଷ । ଏସବୁ ଅଂଚଳରେ ବହୁ ଲୋକ ଶ୍ୱାସଜନିତ ରୋଗ ସହ ଟି.ବି. ଓ କେନସର ଆଦି ରୋଗର ଶିକାର ହେବେ ।

♦ ୧୫ କିଲୋମିଟର ଗୋଲାର୍ଦ୍ଧ ଭିତରେ କୃଷି ଉତ୍ପାଦନ ୪୦ ରୁ ୫୦ ଶତକଡ଼ା କମିଯିବ । ଏ କଥା ବହୁ ଅଂଚଳରେ ପ୍ରମାଣିତ ହୋଇ ସାରିଛି । ପାନୀୟ ଜଳ ଦୂଷିତ ହୋଇଯିବ । ଗାଇଗୋରୁଙ୍କ ଅକାଳରେ ମୃତ୍ୟୁ ହେବ । ବ୍ୟାପକ ଜଙ୍ଗଲ ଜାତ ଦ୍ରବ୍ୟ (କେନ୍ଦୁପତ୍ର, ଟୋଲ, ମହୁଲ, ଶାଳମଞ୍ଜି, ଝାଡୁ, ଚାର, ଲାଖ ଝୁଣା) ଉପରେ ନିର୍ଭରଶୀଳ

ନାମମାତ୍ର ଚାଷୀ, କ୍ଷୁଦ୍ର ଚାଷୀ ଓ ଭୂମିହୀନ ଦଳିତଙ୍କ ଜୀବିକା ନଷ୍ଟ ହେଉଛି । ବିଶେଷ କରି ପନିପରିବା ଓ ଫଳଚାଷ ହୋଇପାରିବ ନାହିଁ । ବିଡି ଯୋଗ୍ୟ କେନ୍ଦୁ ପତ୍ର ମିଳିବ ନାହିଁ ।

◆ କେବଳ ସମ୍ବଲପୁର-ଝାରସୁଗୁଡ଼ା ଜିଲ୍ଲାରେ ହେଉଥିବା ସ୍ପଞ୍ଜ, ଆଲୁମିନା, ଷ୍ଟିଲ ପ୍ରକଳ୍ପ ପାଇଁ ୪୭୮ କ୍ୟୁସେକ୍ ପାଣି ଚାଷୀଙ୍କ ହାତରୁ କମ୍ପାନୀ ହାତକୁ ଚାଲିଯିବ । ପାଖାପାଖି ୫୦,୦୦୦ ଏକର ଚାଷଜମି ଜଳସେଚନ ସୁବିଧାରୁ ବଞ୍ଚିତ ହେବ ।

◆ ଓଡ଼ିଶାର ୬୦୩ ଟି କମ୍ପାନୀ ଲିଜ୍ ନେଇଛନ୍ତି । ଖଣିରୁ କେବଳ ଲୁହାପଥର ଖୋଳିବାକୁ ୧୪୦ ଟି କମ୍ପାନୀ ଓ ଅନ୍ୟାନ୍ୟ ଖଣି ପାଇଁ ୨୦୦୦ ମସିହା ସୁଦ୍ଧା ପୋସ୍କୋକୁ ମିଶାଇ ୪୪ ଟି ବୁଝାମଣା ପତ୍ର ସ୍ୱାକ୍ଷରିତ ହେଲାଣି ।

ସମ୍ପଦର ଲୁଟ

ପ୍ରସ୍ତାବିତ ଶିଳ୍ପାୟନର ମୁଖ୍ୟ ଆଧାର ହେଲା ଖଣିଜ ସମ୍ପଦ ବିଶେଷକରି ବକ୍ସାଇଟ, ଲୁହାପଥର ଓ କୋଇଲା । ଭାରତରେ ଯେତିକି ଆଲୁମିନା ଓ ଇସ୍ପାତ ଉତ୍ପାଦନ ହେଉଛି, ଦେଶର ଚାହିଦା ପୂରଣ କରି ବଳକା ପରିମାଣ ରପ୍ତାନୀ ହେଉଛି । ଏଣୁ ବର୍ତ୍ତମାନ ବକ୍ସାଇଟ ଓ ଲୁହାପଥର ଖନନର ଅର୍ଥ ହେଲା ଷ୍ଟିଲ ଓ ଆଲୁମିନାର ରପ୍ତାନୀ । ଟନ୍ ପିଛା ଅଳ୍ପ ରାଜସ୍ୱ ଲାଭ ପାଇଁ ଭାରତର ଖଣିଜ ସମ୍ପଦକୁ ଖୁବ ଶୀଘ୍ର ବିକ୍ରି କରିଦେବା ଏକ ଷଡ଼ଯନ୍ତ୍ର । ଏହା ବିନିଯୋଗ ନୁହେଁ ଲୁଟ୍ । ଦୁନିଆର ଯାହା କିଛି ବି ସମ୍ପତ୍ତି ଅଛି (ବିକ୍ରିଯୋଗ୍ୟ ପଣ୍ୟ) ସେସବୁର ମୂଳବସ୍ତୁ ହେଉଛି ପ୍ରାକୃତିକ ସଂସାଧନ । ପରିଶ୍ରମ, ବୁଦ୍ଧି ଓ ଯନ୍ତ୍ର ଦ୍ୱାରା ସେଗୁଡ଼ିକୁ ନାନାରକମର ପଣ୍ୟରେ ପରିଣତ କରାଯାଏ । ଏପରିକି ଯନ୍ତ୍ରମାନେ ମୂଳବସ୍ତୁ ବା ଧାତୁରୁ ତିଆରି ହୋଇଥାନ୍ତି । ଏକଥା ଭୁଲିଯିବା ଉଚିତ ନୁହେଁ ଯେ ଏହି ସମ୍ପଦ ସୀମିତ । ଅସରନ୍ତି ନୁହେଁ । ଏହାକୁ ସୃଷ୍ଟି ହେବାକୁ କୋଟି କୋଟି ବର୍ଷ ଲାଗିଛି । ପ୍ରତି ମୁହୂର୍ତ୍ତରେ ତାହା କ୍ଷୟ ହେବାରେ ଲାଗିଛି । ଏକ ନିଷ୍ଠୁର ସତ୍ୟକୁ ମନେ ରଖିବାକୁ ହେବ ଯେ ପୃଥିବୀ ପୃଷ୍ଠରୁ ଓ ଗର୍ଭରୁ ଦିନେ ସବୁ ଖଣିଜ ଦ୍ରବ୍ୟ ସମ୍ପୂର୍ଣ୍ଣ ଶେଷ ହୋଇଯିବ । ଜଗି ରଖି ବ୍ୟବହାର ନ କଲେ ଅଚିରେ ଶେଷ ହୋଇଯିବ । ଏକବିଂଶ ଶତାବ୍ଦୀ ବେଳକୁ ଦେଶର ଅଧିକାଂଶ ଖଣିଜ ଦ୍ରବ୍ୟ ସରିଯାଇଥିବ । ପ୍ରକଳ୍ପ ସଂଖ୍ୟା ବଢ଼ିଲେ, ଉନ୍ନତ ମାନର ଯନ୍ତ୍ର କୌଶଳ ବ୍ୟବହାର ହେଲେ ଏବଂ ରପ୍ତାନୀକୁ ଅଗ୍ରାଧିକାର ଦେଲେ ଆହୁରି କମ ବର୍ଷ ଭିତରେ ଏହା ଶେଷ ହୋଇଯିବ । ଆଜି ଆମ ଦେଶର ଅର୍ଥନୀତି ଓ ଶିଳ୍ପନୀତି ତଥା ଖଣିନୀତିତ ସେଇଆ ଚାହୁଁଛି । ଚାହୁଁଛି ବୋଲିତ ବହୁରାଷ୍ଟ୍ରିୟ କମ୍ପାନୀମାନଙ୍କୁ ଖଣି କ୍ଷେତ୍ରରେ ପୁଞ୍ଜି ଲଗାଣ ପାଇଁ ରିହାତି ଦିଆଯାଇ ନିମନ୍ତ୍ରଣ କରାଯାଉଛି । ୧୯୯୭ର ସରକାରୀ ତଥ୍ୟ ଅନୁସାରେ ୫୦ଟି ପ୍ରକଳ୍ପ ଭିତରୁ ୩୨ ଟି କେବଳ ବହୁରାଷ୍ଟ୍ରିୟ କମ୍ପାନୀକୁ ଦିଆଯାଇଛି । ~~ଏକବିଂଶ ଶତାବ୍ଦୀ ବେଳକୁ ଦେଶର ଅଧିକାଂଶ ଖଣିଜ ଦ୍ରବ୍ୟ~~

| | |
|---|---|
| ଆମେରିକା | ୮ |
| କାନାଡ଼ା | ୩ |
| ଅଷ୍ଟ୍ରେଲିଆ | ୧୦ |
| ଇଂଲଣ୍ଡ | ୬ |
| ଆଫ୍ରିକା | ୪ |

ସେଥିମଧ୍ୟରୁ ବକ୍ସାଇଟ ୭ଟି, ବେସ୍‌ମେଟାଲ ୯ ଟି, ହୀରା ୪ ଟି, ସୁନା ୨ଟି, ବାକି ସବୁ ଲୁହା ଓ ଅନ୍ୟାନ୍ୟ । ପ୍ରମୁଖ କମ୍ପାନୀ ଗୁଡ଼ିକ ହେଲା ଅଷ୍ଟ୍ରେଲିଆର ବିଏଚପି, ଇଂଲଣ୍ଡର ରିଓଟିଣ୍ଟୋ, ଦକ୍ଷିଣ ଆଫ୍ରିକାର ଡେବିୟର୍ସ, ଆମେରିକାର ଆଲକା, କାନାଡ଼ାର ଆଲାକାନ । ପୁଣି ଓଡିଶାକୁ ଫେରିବା ।

କ· ଓଡ଼ିଶାର ମୋଟ ବକ୍ସାଇଟ – ୭୩୩୦ ଲକ୍ଷ ଟନ୍
ସବୁ ଶେଷ ହେବାକୁ ୭୫ ବର୍ଷ
ଏକା ସାଙ୍ଗରେ ଯଦି ସବୁ ପାହାଡ଼ରେ କାମ ଆରମ୍ଭ ହୁଏ – ୨୦-୨୫ ବର୍ଷ ।

ଖ· ଲୁହା ପଥର ମୋଟ ରିଜର୍ଭ – ୩୫୫୭୦ ଲକ୍ଷ ଟନ
ସବୁ ଶେଷ ହେବାକୁ – ୪୫ ବର୍ଷ

ଗ· ମୋଟ କୋଇଲା – ୪୯୪୦୦୦ ଲକ୍ଷ ଟନ୍
ସବୁ କୋଇଲା ଶେଷ ପାଇଁ – ୯୯ ବର୍ଷ
ଏହାର ଅର୍ଥ ସବୁ ଖଣିଜ ୫୦-୧୦୦ ବର୍ଷ ଭିତରେ ଶେଷ ହୋଇଯିବ । ତା ପରେ ?

## ଜଙ୍ଗଲ

୧୯୮୨-୯୧ ଦଶକରେ ୮୭ ଟି ଜଙ୍ଗଲ ପ୍ରକଳ୍ପ ପାଇଁ ୯୮୦୦ ଏକର ଜଙ୍ଗଲ ନଷ୍ଟ ହେଇଥିବା ବେଳେ ୧୯୯୨-୨୦୦୦ ମଧ୍ୟରେ ୧୩୦ ଟି ପ୍ରକଳ୍ପ ପାଇଁ ୧୫,୫୪୩ ଏକର ଜଙ୍ଗଲ ନଷ୍ଟ ହେଇଛି ।

୧· କେନ୍ଦୁଝର, ସୁନ୍ଦରଗଡ଼ରେ ଥିବା ଲୁହାତକ ରହିଛି ଜଙ୍ଗଲ ଅଂଚଳରେ ।
୨· ସମ୍ବଲପୁର, ସୁନ୍ଦରଗଡ଼ ଅଂଚଳରେ କୋଇଲା ଖଣି ଯେଉଁଠି ରହିଛି, ସେ ଅଂଚଳରେ ବି ଜଙ୍ଗଲ ରହିଛି ।

୩· କଳାହାଣ୍ଡିର ନିୟମଗିରି, ଖଣ୍ଡୁଆଳ ମାଳୀ, ଲକ୍ଷ୍ମୀପୁରର କୋଡ଼ିଂମାଳି, ବରଗଡ଼-ବଲାଙ୍ଗୀରର ଗନ୍ଧମାର୍ଦ୍ଦନ ବି ରହିଛି ଜଙ୍ଗଲ ଅଂଚଳରେ । ବୃହତ୍ତ ଶିଳ୍ପ, ନଦୀବନ୍ଧ, ସହରୀକରଣ ପାଇଁ ଆଗରୁ ବହୁ ଜଙ୍ଗଲ ନଷ୍ଟ ହୋଇସାରିଛି । ସବୁ ପ୍ରସ୍ତାବିତ ପ୍ରକଳ୍ପ ଖଣିଜ ହେଉ କି ନଦୀବନ୍ଧ ଅବା ପର୍ଯ୍ୟଟନ ଶିଳ୍ପ ଯଦି ହୁଏ, ତେବେ ଅସଲରେ ବଂଚି ରହିଥିବା ୧୨ -୧୫ ଶତକଡ଼ା ଜଙ୍ଗଲ ଆଗାମୀ ଦଶ ବର୍ଷରେ ଶେଷ ହୋଇଯିବ । (ଅବଶ୍ୟ ସରକାରୀ କାଗଜପତ୍ରରେ ୩୫ ପ୍ରତିଶତ ଜଙ୍ଗଲ ରହିଛି) । ଜଙ୍ଗଲଜାତ ଦ୍ରବ୍ୟ ଆଧାରିତ ଅର୍ଥନୀତିର ମୃତ୍ୟୁ ଘଟିବ ।

କେନ୍ଦୁପତ୍ର, ଶାଳମଞ୍ଜି, ଚାର, ମହୁଲ, ଟୋଲ, କାଠ, ବାଉଁଶ, ଝାଡୁକୁ ନେଇ ଜିଉଁଥିବା ଲକ୍ଷ ଲକ୍ଷ କୁଟୀର ଶିଳ୍ପର ଶ୍ରମିକ, ଚାଷୀ, ଆଦିବାସୀ, ଭୂମିହୀନ ଦଳିତ, ଜଙ୍ଗଲ ଶ୍ରମିକ ସର୍ବହରା ହୋଇଯିବେ । ଓଡ଼ିଶାରୁ ଆଦିବାସୀ ସଂସ୍କୃତିର ମୃତ୍ୟୁ ଘଟିବ । ଓଡ଼ିଶାର ପରିବେଶ ଉପରେ ବି ଘାତକ ପ୍ରଭାବ ପଡ଼ିବ । ସେ କଥା ବଢନ୍ତା ଉତ୍ତାପ ଓ ମୌସୁମୀ ବର୍ଷାର ଅନିୟମିତତା ସୁଚେଇ ସାରିଲାଣି । ଦେଲା ଭୁଇଁର ଶିଳୁଗଛ, ହେନ୍ତାଳ ବଣ ଓ ଝାଉଁ ବଣ ଶେଷ ହେଲାପରେ ମହାବାତ୍ୟା ମାନଙ୍କୁ ପ୍ରତି ପାଞ୍ଚବର୍ଷରେ ଥରେ ଅଧେ ଭେଟି ହେବ ଓ ସମୁଦ୍ରର ଜୁଆରିଆ ମୁହଁରେ ହଜାର ହଜାର ଲୋକଙ୍କୁ ବଳୀ ଦେବାକୁ ପଡ଼ିବ । ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାରେ ମରୁଡ଼ି ଓ ଉପକୂଳରେ ବାତ୍ୟା ଓ ବନ୍ୟା । ଅବଶ୍ୟ ଆମ ରାଜ୍ୟରେ ଏକ ଶାଗୁଣା ଦଳ ତିଆରି ହୋଇ ସାରିଛନ୍ତି, ଯେଉଁମାନେ ବନ୍ୟା, ବାତ୍ୟା ଓ ମରୁଡ଼ିକୁ ଅପେକ୍ଷା କରିଛନ୍ତି । ଏ ସବୁ ବିପର୍ଯ୍ୟୟ ଆଜି ଏକ ବର୍ଗ ପାଇଁ ଅର୍ଥ ଉପାର୍ଜନ ଓ ବ୍ୟବସାୟର ସାଧନ ହୋଇଛି । ଏଇ ଶାଗୁଣାଙ୍କ ପାଇଁ ଓଡ଼ିଶାବାସୀଙ୍କୁ ଶବ ହେବାକୁ ପଡ଼ିବ । ମଲା ଲୋକତ ମରିଯିବେ, ବଂଚିଥିବା ଲୋକ ଜୀବିତାବସ୍ଥାରେ ନର୍କ ଭୋଗିବେ । ସେଥିପାଇଁ ବୋଧେ ମୁଖ୍ୟମନ୍ତ୍ରୀ ଶିଳ୍ପାୟନ ପରିପ୍ରେକ୍ଷିରେ ଓଡ଼ିଶା ସ୍ୱର୍ଗ ପାଲଟିବ ବୋଲି ଘୋଷଣା କରିଛନ୍ତି । ଖୋଦ ଓଡ଼ିଶା ସରକାରଙ୍କ ଜଙ୍ଗଲ ବିଭାଗର ତଥ୍ୟ ଅନୁଯାୟୀ ରାଜ୍ୟର ମୋଟ ୫୮,୧୩,୫୦୨ ହେକ୍ଟର ଜଙ୍ଗଲ ମଧ୍ୟରୁ ମାତ୍ର ୪୭,୫୪୦ ହେକ୍ଟର ଜଙ୍ଗଲ ଘରୋଇ ଜବର ଦଖଲକାରୀ (ଏଥିରେ ପୋଡୁ ଚାଷ ମଧ୍ୟ ସାମିଲ) ଙ୍କ ଦ୍ୱାରା ନଷ୍ଟ ହେଉଥିବା ବେଳେ ଖଣି ଖନନ, ଶିଳ୍ପ ଓ ଡ଼େମ ନିର୍ମାଣରେ ୨,୩୨,୨୦୫ ହେକ୍ଟର ଜଙ୍ଗଲ ଧ୍ୱଂସ ହେଇଛି ।

## ଶିଳ୍ପ ଓ ଜଳ

ଜଳର ଘରୋଇକରଣ ଆରମ୍ଭ ହୋଇସାରିଛି । ଜଳନୀତି -୨୦୦୩ରେ ତାକୁ କାନୁନୀ ପୋଷାକ ପିନ୍ଧାଇ ଦିଆସାରିଛି । ପାଣିର ବଜାରୀକରଣ ଆରମ୍ଭ ହେଲାଣି ଜୋରସୋରରେ । ଜଳ ନୀତି - ୨୦୦୩ର ଅସଲ ଉଦ୍ଦେଶ୍ୟ ହେଲା, କମ୍ପାନୀ ହାତରେ ରାଜ୍ୟର ଜଳସଂପଦକୁ ଟେକିଦେବା । ଜଳନୀତିର ପ୍ରାଥମିକତା ହେଲା —

୧· ବିଦେଶୀ କମ୍ପାନୀ ଦ୍ୱାରା ପାଣିର ବ୍ୟବସାୟ । ୨· ଶିଳ୍ପ ପ୍ରକଳ୍ପ ମାନଙ୍କ ଚାହିଦା ପୂରଣ ।

ଓଡ଼ିଶାର ଅଧିକାଂଶ ଖଣି ଓ ଶିଳ୍ପ ପାଖରେ ନଦୀ ଓ ନଦୀବନ୍ଧ ଗୁଡ଼ିକ ରହିଛି । ପ୍ରସ୍ତାବିତ ଖଣି ଓ ଶିଳ୍ପ ସବୁ ନଦୀ, ଝରଣା ଓ ନଦୀବନ୍ଧକୁ ଆଖି ଆଗକୁ ରଖି ପ୍ରତିଷ୍ଠା କରାଯାଉଛି । ଖଣି ଓ ଖଣିଜ ଭିତ୍ତିକ ଶିଳ୍ପ ପାଇଁ ପ୍ରଚୁର ପାଣି ଓ ବିଜୁଳିର ଆବଶ୍ୟକତା ରହିଛି ।

ଦାମନଜୋଡ଼ି ବକ୍ସାଇଟ ଖଣିରେ ଯେତିକି ପାଣି ବ୍ୟବହାର ହୁଏ ସେଥିରେ ୨ ଲକ୍ଷ ୫୦ ହଜାର ଏକର ଜମିରେ ଜଳସେଚନ ବ୍ୟବସ୍ଥା ହୋଇପାରିବ । ଯଦି ୫୩,୦୦୦ କୋଟି ଟଙ୍କାର ପୁଞ୍ଜି ବକ୍ସାଇଟ ଶିଳ୍ପରେ ନିବେଶ କରାହେବ ତେବେ ପ୍ରାୟ ୨୦ ଲକ୍ଷ ଏକର ଜମିରେ ଜଳସେଚନ ପାଇଁ ଆବଶ୍ୟକ ହେଉଥିବା ଜଳର ଦରକାର ହେବ । ବକ୍ସାଇଟ ପ୍ରକଳ୍ପ ଗୁଡ଼ିକ ଜଳାଭାବ ରହିଥିବା କେ·ବି·କେ· ଜିଲ୍ଲାରେ ହେବାକୁ ଯାଉଛି । ଦେଖିବାକୁ ଗଲେ କେ·ବି·କେ ଜିଲ୍ଲାର ପାନୀୟ ଓ ପାରମ୍ପରିକ ଜଳସେଚନରେ ଏଇ ବକ୍ସାଇଟ ପାହାଡ଼ ଗୁଡ଼ିକର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପ୍ରାୟ ସବୁତକ ଝରଣା ଓ ପ୍ରମୁଖ ଛୋଟ ବଡ଼ ନଦୀ ଗୁଡ଼ିକ ସେଇ ପାହାଡ଼ ଗୁଡ଼ିକରୁ ବାହାରିଛି ।

୧· ଗନ୍ଧମାର୍ଦ୍ଦନରୁ ୨୩ ଟି ଝରଣା । ୨· ନିୟମଗିରି ଓ ଖଣ୍ଡୁୱାଲମାଳୀରୁ ୬୦ରୁ ବେଶି ଝରଣା ବାହାରିଛି । ନାଗାବଳୀ ଓ ବଂଶଧାରା ନଦୀ ଅନ୍ୟତମ । ୩· କାଶୀପୁରର ବାଫଲାମାଳୀ ଓ ଶାସୁବୋହୁ ମାଳୀ, ଥୁଆମୁଲ ରାମପୁରର ସିଜି ଓ କୁଟ୍ରି ମାଳୀ, ଲକ୍ଷ୍ମୀପୁରର କୋଡ଼ିଂମାଳୀ, ଦଶମନ୍ତପୁରର ଘୁସରୀମାଳୀ, କୋରାପୁଟ ଶିମୁଳିଗୁଡ଼ାର ଦେଓମାଳୀର ବକ୍ସାଇଟ ପାହାଡ଼ ସବୁରୁ ବେଶି ଝରଣା/ଶତାଧିକ ଅନେକ ଓ ଛୋଟ ଛୋଟ ନଦୀ ସୃଷ୍ଟି ହୋଇଛି । ସେ ସବୁ ଅଂଚଳରେ ଏଇ ଝରଣା ଓ ଛୋଟ ନଦୀ ଗୁଡ଼ିକ ହେଉଛନ୍ତି ଜୀବନରେଖା । ସେଇଥିପାଇଁ କାଶୀପୁର ଜନଆନ୍ଦୋଳନର ଆବାହକ ଭଗବାନ ମାଝୀ କୁହନ୍ତି – "କିଏ କହିଲା ବକ୍ସାଇଟ ବ୍ୟବହାର ହେଉନାହିଁ । କେତେ ହଜାର ବର୍ଷ ହେଲା ସେ ଆମର ଓ ଜମିର ଶୋଷରେ ପାଣି ହେଇ ବ୍ୟବହୃତ ହେଉଛି । ତମର ଲାଗିସେ ଆଲୁମିନା ଆମପାଇଁ ସେ ପାଣି ।" କୋଡ଼ିଂମାଳିରେ ପ୍ରସ୍ତାବିତ ଖଣିଖନନକୁ ବିରୋଧ କରୁଥିବା ବୁଲ୍‌କା ମିଣିଆକା କୁହେ – "ତୁମକୁ କାର, ଉଡାଜାହାଜ, ବମ୍, ମିଶାଇଲ ଲାଗି ଆଲୁମିନା ଦରକାର, ଆମକୁ ପାଏନ ଲାଗି ।" ଦନାଇମା ମୁକ୍ତା ଝୋଡ଼ିଆ ବାଫଲା ମାଳୀକୁ କୁହନ୍ତି, ସେ ଆମର ମାଁ, ତାର କ୍ଷୀର ଖାଇ ଆମର ବାପା, ଅଜା, ମା, ଦାଦି ଏଇ ମାଟିରେ ମିଶିଲେ । ଆମେବି ଏଇ ମାଟିରେ ମିଶିବୁ ।"

କେବିକେ ଜିଲ୍ଲାର ସମସ୍ତ ପ୍ରସ୍ତାବିତ ବକ୍ସାଇଟ ପ୍ରକଳ୍ପ ହୁଏ ତେବେ କେବିକେ ହେବ ଚିର ମରୁଡ଼ିପ୍ରବଣ ଅଂଚଳ କେ·ବି·କେର ବହୁ ଅଂଚଳ ଯୁଦ୍ଧଧ୍ୱସ୍ତ ଇଲାକା ପରି ହେବ । ପାନୀୟ ଜଳର ଘୋର ଅଭାବ ଦେଖାଯିବ । ଗାଈଗୋରୁ ପାଇଁ ଚାରଣ ଭୂମି ଓ ଜଳ ରହିବ

ନାହିଁ । ଗୋ ସଂପଦ, ଜଙ୍ଗଲୀ ପଶୁ, ପକ୍ଷୀ ସବୁ ଲୋପ ପାଇଯିବେ । ଗୋଟିଏ ସମୟ ଥିଲା ଏ ଅଂଚଳର ଲୋକ ସାମୟିକ ଭାବେ ଦାଦନ ଖଟି ଗାଁକୁ ଫେରି ଆସୁଥିଲେ । କିନ୍ତୁ ଚାଷ ଓ ଜଙ୍ଗଲ ଜାତ ଦ୍ରବ୍ୟ ଉପରେ ନିର୍ଭର କରି ବାକି ସମୟ ଚଳି ପାଉଥିଲେ । ପ୍ରସ୍ତାବିତ ପ୍ରକଳ୍ପ ସବୁ ଯଦି କାର୍ଯ୍ୟକାରୀ ହୁଏ ତେବେ ଠିକାଦାର ତଥା ଅଫିସର ଶ୍ରେଣୀକୁ ଛାଡ଼ିଦେଲେ ବାକି ଲୋକଙ୍କ ଭିତରୁ ବେଶି ଭାଗ ଲୋକ ଦିନ ମଜୁରିଆ ହୋଇ ଯାଯାବର ପ୍ରାୟ ଘୁରି ବୁଲିବେ । କାରଣ ତାଙ୍କୁ ଭରସା ଦେଉଥିବା ଜଙ୍ଗଲ ନ ଥିବ ଏବଂ ଜମି ସବୁ ପାଣି ବିନା ବଂଜର ହୋଇ ପଡ଼ି ରହିବ ।

୧. ନାଗାବଳୀ ଓ ବଂଶଧାରା ପ୍ରଥମେ ବିଷାକ୍ତ ହେବ ଓ ପରେ ଶୁଖିଯିବ । ୨. ତେଲ ନଦୀ ପାଣିରୁ ପ୍ରଥମେ କଳାହାଣ୍ଡିବାସୀ ବଂଚିତ ହେବେ ଏବଂ ସମୟକ୍ରମେ ଏହା ବିଷାକ୍ତ ହୋଇ ମୃତ୍ୟୁମୁଖୀ ହେବ । ୩. ଉତ୍କଳ ଆଲୁମିନା ପ୍ରକଳ୍ପ ଯୋଗୁଁ ଇନ୍ଦ୍ରାବତୀ ସମୟକ୍ରମେ ବିଷାକ୍ତ ହେବ ଏବଂ ଅଳ୍ପ ସମୟ ଭିତରେ ପୋତି ହେବାକୁ ଆରମ୍ଭ ହେବ । ୪. ନଦୀ ଝରଣା ବିଷାକ୍ତ ହେବ ଓ ପରେ ଶୁଖିଯିବ । ଫଳରେ ଏ ଅଂଚଳରେ ସମସ୍ତ ମାଛ, କଙ୍କଡ଼ା, କଇଁଛ ମରିଯିବେ । ମାଛଧରି ଜିଉଥିବା ଲୋକଙ୍କ ଜୀବିକା ଯିବ ।

ବକ୍ସାଇଟ ଓ ପାଣିର ଏ ସଂପର୍କକୁ ଏଇ ଲୋଭୀ ଶାସକ ଶ୍ରେଣୀ ଓ ତାଙ୍କୁ କାନ ଧରି ବସ ଉଠ କରୁଥିବା କାର୍ପୋରେଟ, କେବେ ଶୁଣିଛି ନା କେବେ ଶୁଣିବ ? ଆଲୁମିନା ଜନିତ ବିକାଶକୁ ପ୍ରଶ୍ନ କରୁଥିବା କାଶୀପୁର, ଲାଞ୍ଜିଗଡ଼ ବାସୀଙ୍କୁ ପ୍ରଶାସନ ଉତ୍ତର ଫେରାଉଛି । ଉତ୍ତର ହେଲା ଲାଠି, ଗୁଳି, ଜେଲ । ପ୍ରଶ୍ନ କରିବାର ଅଧିକାରରୁ ଆଜିର ଆଦିବାସୀ ବଂଚିତ ଅଥଚ ସର୍ବବୃହତ୍ତ ଗଣତନ୍ତ୍ରର ଗର୍ବରେ ମତ୍ତ ଆମର ମଧ୍ୟବିତ୍ତ ଶ୍ରେଣୀ ଆଜି ବଧୀର ।

ସମ୍ବଲପୁର, ଝାରସୁଗୁଡ଼ା ଓ ସୁନ୍ଦରଗଡ଼ ଜିଲ୍ଲାର ଲୋକେ ଆଗରୁ ରହିଥିବା କୋଇଲା ଓ ଲୁହା ଖଣି ଯୋଗୁଁ ବିଶେଷ କରି ଏମସିଏଲ୍, ଇବ୍ଲ, ବିର୍ଲାର କାଗଜ କଳ ପାଇଁ ଦୂଷିତ ଜଳ ପିଇବାକୁ ବାଧ୍ୟ ହୋଇ ସାରିଛନ୍ତି । ମହାନଦୀର ପାଣି ବି ଗ୍ରେଡ୍ ହୋଇ ସାରିଛି । ଓଡ଼ିଶାବାସୀଙ୍କୁ ବନ୍ୟାରୁ ରକ୍ଷା କରିବା, ବିଜୁଳି ଯୋଗେଇ ଦେବା ଓ ଜଳସେଚନର ସୁବିଧା ଯୋଗାଇଦେବା ପାଇଁ ସବୁଠାରୁ ବେଶି ତ୍ୟାଗ କରିଥିବା ଚାଷୀ, ଆଦିବାସୀ ଓ ଦଳିତଙ୍କ ଅଂଚଳ ହେଲା ଏଇ ସବୁ ଜିଲ୍ଲା । ଦୁର୍ଭାଗ୍ୟର କଥା ଆଜି ପର୍ଯ୍ୟନ୍ତ କେନାଲର ତଳମୁଣ୍ଡରେ ଥିବା ଜମିରେ ପାଣି ମାଡ଼ି ପାରୁ ନାହିଁ । ଏଭଳି ପରିସ୍ଥିତିରେ ଛତୁ ଫୁଟିଲାଭଳି ସ୍ପଞ୍ଜ ଆଇରନ ଶିଳ୍ପମାନ ଗଢି ଉଠିଲାଣି । ଆହୁରି ହେବାକୁ ଯାଉଛି । ଆଗରୁ ଥିବା ଓ ହୋଇଥିବା ବା ହେବାକୁ ଯାଉଥିବା ସ୍ପଞ୍ଜ ଆଇରନ ପ୍ରକଳ୍ପ ଗୁଡ଼ିକ ର ସଂଖ୍ୟା ୫୦-୬୦ ହେବ । ତା ସାଙ୍ଗକୁ ଭୂଷଣ ଷ୍ଟିଲ, ଆଦିତ୍ୟ ବିର୍ଲା, ବେଦାନ୍ତ ଆଲୁମିନା ପ୍ରକଳ୍ପ ସବୁ ରହିନ୍ତି । ଏବେ ପୁଣି ମିତ୍ତଲ ଓ ରିଲାଏନ୍ସ

(ଅମ୍ବାନୀ ଗ୍ରୁପ) ଯଥାକ୍ରମେ ଷ୍ଟିଲ ଓ କାଗଜ ବିଦ୍ୟୁତ ପ୍ରକଳ୍ପ ପାଇଁ କଥାବାର୍ତ୍ତା ଆରମ୍ଭ କରିଥନ୍ତି । ଏବେ ପୁଣି ନିଉ ରିଲାଏନ୍ସ (ଅମ୍ବାନୀ ଗ୍ରୁପ) କମ୍ପାନୀ ଯଥାକ୍ରମେ ଷ୍ଟିଲ ଓ କାଗଜ ବିଦ୍ୟୁତ ପ୍ରକଳ୍ପ ପାଇଁ ଘୋଷଣା କରିଛନ୍ତି । ଏ ଭିତରେ ସରକାରଙ୍କ ସହ କମ୍ପାନୀ ଗୁଡ଼ିକ ୪୭୮ ଏମ.ଏସ.କ୍ୟୁସେକ ପାଣି ପାଇଁ ଚୁକ୍ତି କରି ସାରିଲେଣି । ସବୁତକ ପାଣି ସବୁ ଆସିବ ହୀରାକୁଦ ଡ୍ୟାମରୁ । ହୀରାକୁଦର ଜଳଧାରଣ କ୍ଷମତା ପଟୁମାଟି ଜମା ହେବା ଯୋଗୁଁ କମି ଯାଉଛି । ଠିକ୍ ସେମିତି ଶିଳ୍ପ ଜନିତ ପ୍ରଦୁଷଣରେ ଏହା ପ୍ରଦୂଷିତ । ସମ୍ବଲପୁର, ବୁର୍ଲା, ହୀରାକୁଦ ଅଂଚଳରେ ପିଇବା ପାଣିର ଚାହିଦା ବଢୁଛି । ୪୭୮ କ୍ୟୁସେକ ପାଣି କମ୍ପାନୀ କୁ ଦିଆଗଲେ ୪୦ ରୁ ୫୦ ହଜାର ହେକ୍ଟର.ଚାଷ ଜମି ଜଳସେଚନର ସୁବିଧାରୁ ବଂଚିତ ହେବ । ଏପରିକି ପାୱାର ଚ୍ୟାନେଲରୁ ଶିଳ୍ପପାଇଁ ପାଣି ଦିଆଯିବାର ଯୋଜନା ହୋଇ ସାରିଛି । ସରକାରଙ୍କ ଶିଳ୍ପନୀତି ଅନୁସାରେ ଜଳ ପାଇବାରେ ପ୍ରଥମ ହକ୍ କମ୍ପାନୀର । ପରେ ଯାଇ କୃଷକ ପାଣିକୁ ନେଇ ଓଡିଶାର କୃଷି କ୍ଷେତ୍ର ଓ କୃଷକ ଏବଂ ଶିଳ୍ପ ଓ ଶିଳ୍ପ ପତିଙ୍କ ଭିତରେ ବିବାଦ ହେବାକୁ ଯାଉଛି । ଏ ବାବଦରେ ପ୍ରଶାସନ ପାଣି ପାଇଁ ଚୁକ୍ତି କରିଥିବା କମ୍ପାନୀ ମାନଙ୍କ ସପକ୍ଷରେ ଛିଡ଼ାହେବ, ସେ କଥା ସ୍ପଷ୍ଟ ହୋଇଗଲାଣି । ଏଇ କଳ କାରଖାନା ଗୁଡ଼ିକ ଏ ଅଂଚଳରେ ଯେଉଁ ଲୋକମାନଙ୍କୁ ବିସ୍ଥାପିତ କରିବାକୁ ଯାଉଛନ୍ତି, ସେମାନେ ଆଗରୁ ରାଉରକେଲା ଷ୍ଟିଲ ପ୍ଲାଣ୍ଟ ହେଉ କି ହୀରାକୁଦ ନଦୀବନ୍ଧ ହେଉ ଅବା କୋଇଲା ଖଣି ଓ ଇବ୍ ତାପଜ ବିଦ୍ୟୁତ ପ୍ରକଳ୍ପ ଯୋଗୁଁ ଥରେ, ସ୍ଥଳ ବିଶେଷରେ ଦି ଥର ବିସ୍ଥାପିତ ହୋଇସାରିଛନ୍ତି । ପୁଣି ଥରେ ବିସ୍ଥାପନ ଅର୍ଥ ମରଣ ସହ ସମାନ । ପାଣିର ହକ୍ ପାଇଁ ନଦୀ ଓ ନଦୀବନ୍ଧର ପାଣିରେ ଜଳସେଚନ ଓ ପାନୀୟ ଜଳକୁ ଅଗ୍ରାଧିକାର ପାଇଁ ବଡ଼ଧରଣର ଜନ ଆନ୍ଦୋଳନ ପାଇଁ ଚାଷୀଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ । ଅବଶ୍ୟ ସମ୍ବଲପୁର ଓ ବରଗଡ ଅଞ୍ଚଳର ଚାଷ ଆନ୍ଦୋଳନ ଆରମ୍ଭ କଲେଣି । ଅନ୍ୟଥା ଅବସ୍ଥା କେତେ ଦୟନୀୟ ହେବ କଳ୍ପନାତୀତ । ଅନ୍ୟ ଦିଗରେ କଳକାରଖାନା ଗୁଡ଼ିକ ନିଜର ଦୂଷିତ ପାଣି ଛାଡୁ ଥିବାରୁ ହୀରାକୁଦ ନଦୀବନ୍ଧରୁ ଅନେକ ପ୍ରଜାତିର ମାଛ ମରିଗଲେଣି । ମାଛ ଉତ୍ପାଦନ କମିବାରେ ଲିଗିଛି । ଗତ ୧୫ ବର୍ଷ ମଧ୍ୟରେ (୯୦-୯୧ ରୁ ୨୦୦୪-୨୦୦୫) ମାଛ ଉତ୍ପାଦନ ୪୫ ଭାଗ ହ୍ରାସ ହେଲାଣି । ବିଶେଷ କରି କାରଖାନାରୁ ନିର୍ଗତ ଆର୍ସେନିକ ଓ ମର୍କ୍ୟୁରି କମ୍ପାଉଣ୍ଡ ଭଳି ରାସାୟନିକ ମତ୍ସ୍ୟଜାତି ପାଇଁ ଘାତକ ହୋଇପଡ଼ିଛି । ବଢନ୍ତା କାରଖାନା ସଂଖ୍ୟା ଓ ତତ୍ ଜନିତ ପ୍ରଦୂଷଣର ପ୍ରଭାବରୁ ଆଗାମୀ ଦିନରେ ହୀରାକୁଦ ନଦୀବନ୍ଧ ମତ୍ସ୍ୟଶୂନ୍ୟ ହେବାର ସମ୍ଭାବନା ଜଳ ଜଳ ଦିଶୁଛି । ଏଠିକାର ମାଛ ଉତ୍ପାଦନର ଉପରେ ହଜାର ହଜାର ଧୀବର ନିର୍ଭରଶୀଳ । ସେମାନଙ୍କ ଜୀବିକା ଶେଷ ହେଇଯିବ । ବ୍ରାହ୍ମଣୀ ନଦୀତ କେବେ ଠୁ ବ୍ୟବହାର ଅଯୋଗ୍ୟ ହୋଇସାରିଛି ।

ଜଳର ଘରୋଇକରଣ ଯୋଗୁଁ ପାଣିର ଦର ଏତେ ହେବ ଯେ, ଚାଷ ଛାଡ଼ି ଦେବାକୁ ବାଧ୍ୟ ହେବ । ନିଜ ଜମିକୁ କମ୍ପାନୀମାନଙ୍କୁ ବିକି ଦେବ, ଲିଜ୍ ଦେଇ ଦେବ । ଅନ୍ୟପଟେ ଭୂତଳ ଜଳକୁ କମ୍ପାନୀ ଗୁଡ଼ିକ ବୋରୱେଲ ମାଧ୍ୟମରେ ଦୋହନ କରୁଛନ୍ତି । ଶହ ଶହ ସଂଖ୍ୟାରେ ବୋରୱେଲ ହେବା ଫଳରେ ମାଟିର ଜଳ ଧାରଣା କ୍ଷମତା କମି ସେ ଅଂଚଳରେ ଜଳତଳ ଶେଷ ହୋଇଯିବ । ଏହା ସମ୍ବଲପୁର, କେନ୍ଦୁଝର, ଝାରସୁଗୁଡ଼ା ଓ ସୁନ୍ଦରଗଡ଼ ଅଂଚଳରେ ବେଶି ଦେଖିବାକୁ ମିଳୁଛି । ଅନ୍ୟଦିଗରେ ଗୋରୁ ମହିଷାଣୀ ଅଂଚଳ, ଖଣି ସରିଗଲା ପରେ ଉତ୍କଟ ଜଳାଭାବର ସାମ୍ନା କରୁଛି । ପୋସ୍କୋ ପାଇଁ ଖଣି ଖନନ ଯୋଗୁଁ ଖଣ୍ଡାଧାର ପ୍ରପାତ ଶୁଖିଯିବ । ତାଳଚେର, ସୁନ୍ଦରଗଡ଼ ଅଂଚଳରେ ଭୂତଳ ଜଳସ୍ତର ଉଦବେଗ ପୂର୍ଣ୍ଣ ଭାବେ ତଳକୁ ଖସିଚାଲିଛି । ତାଳଚେରର ସୁରକ୍ଷା ପାଇଁ ଖଣି ବରୋଧୀ ଆନ୍ଦୋଳନ ଆରମ୍ଭ ହୋଇଗଲାଣି ।

ପାଣି ଓ ଜଙ୍ଗଲ ଉପରେ ଦାଉ ସାଧିବା ଅର୍ଥ ଓଡିଶାର ପ୍ରମୁଖ ସମୁଦାୟ, ଚାଷୀ, ଆଦିବାସୀ ଓ ଦଳିତଙ୍କୁ ପଙ୍ଗୁ କରିଦେବା । ତା ହେଲେ ପ୍ରଶ୍ନ ଉଠୁଛି ଆଜିର ଅର୍ଥନୀତି, ଅର୍ଥନୀତି ଅନୁରୂପ ଶିଳ୍ପ, ଜଙ୍ଗଲ ନୀତିର ଅସଲ ଉଦ୍ଦେଶ୍ୟ ତାହେଲେ କଣ କୃଷି କ୍ଷେତ୍ର ଓ କୃଷକ / ଖଟିଖିଆ ଶ୍ରେଣୀ ଉପରେ ଆକ୍ରମଣ ? ଏ ଯାଏଁ କୃଷି ଓ ଜଙ୍ଗଲ କ୍ଷେତ୍ର ହିଁ ଓଡ଼ିଶାବାସୀଙ୍କୁ ସବୁଠୁ ବେଶୀ ନିଯୁକ୍ତି ଓ ରୋଜଗାର ଦେଇ ଆସୁଛି । ବଢନ୍ତା ବେକାରୀ ଓ ବେରୋଜଗାରୀର ବୋଝ, ଅବହେଳିତ କୃଷିକ୍ଷେତ୍ର ଓ ଭୁଲ ବିକାଶ ନୀତି ଯୋଗୁଁ ଶେଷ ହେଉଥିବା ଜଙ୍ଗଲ କ୍ଷେତ୍ରଉଠେଇ ପାରୁନି ଏକଥା ସତ । ସେଥିପାଇଁ ଅଣକୃଷି , ଅଣ ଜଙ୍ଗଲ-କ୍ଷେତ୍ରରେ ନିଯୁକ୍ତି ଓ ରୋଜଗାର ସୃଷ୍ଟି କରିବା ଜରୁରୀ ହେଲେ ଆଶାତୀତ ସଂଖ୍ୟାରେ ନୂଆ ରୋଜଗାର ସୃଷ୍ଟି ନ କରି, ପାଣି-ଖଣି-ଜଙ୍ଗଲର ଦୋହନ, କୃଷି ଓ ଜଙ୍ଗଲ କ୍ଷେତ୍ରରେ ଥିବା ପାରଂପାରିକ ଜୀବିକା ନିର୍ବାହ ପୂର୍ବକ କରୁଥିବା ୯୦ ଭାଗ ଓଡ଼ିଶାବାସୀଙ୍କୁ ସର୍ବହରା କରିଦେବାର ଏ ଷଡ଼ଯନ୍ତ୍ରର ରହସ୍ୟ ବୁଝି ହେଉନାହିଁ । କୃଷିକୁ ମାରି, ଜଙ୍ଗଲକୁ ଶେଷ କରି, ମୁନାଫା ଓ ଆଧୁନିକ ଯନ୍ତ୍ର କୌଶଳ ଆଧାରିତ ଖଣି ଭିତ୍ତିକ ବୃହତ୍ତ ପ୍ରକଳ୍ପ କେନ୍ଦ୍ରିକ ଶିଳ୍ପାୟନ ଓଡ଼ିଶା ଜନସାଧାରଣ ସ୍ୱାର୍ଥର ପରିପନ୍ଥୀ । ଓଡ଼ିଶା ଭଳି ରାଜ୍ୟରେ କୃଷି ଓ କୃଷକ ସହ ଶତ୍ରୁତା ନିଶ୍ଚୟ ଆତ୍ମଘାତୀ ହେବ ।

ସହଯୋଗୀ ଲେଖା- ଜଙ୍ଗଲ ଓ ଜନତା - ଭାଲ ଚନ୍ଦ୍ର ଷଡଙ୍ଗୀ
ଜଙ୍ଗଲ ଓ ଜୀବିକା- କିଶୋର ସାମଲ
ବିକାସ, ଖଣି ଓ ଜନ ଆନ୍ଦୋଳନ - ଦେବ

ପ୍ରସ୍ତୁତି - ସରୋଜ

| ଭାରତରେ ଥିବା ସଂପଦ | ବର୍ଷରେ ଶେଷ | ଓଡ଼ିଶାରେ ଥିବା ସଂପଦ | ବର୍ଷରେ ଶେଷ |
|---|---|---|---|
| ଅଶୋଧିତ ତେଲ | ୧୫ | | |
| ପ୍ରାକୃତିକ ଗ୍ୟାସ | ୨୭ | | |
| କୋଇଲା | ୨୧୩ | ୪୬୪୦୦୦ | ୯୯ |
| ତମ୍ବା | ୬୪ | | |
| ସୁନା | ୪୭ | ~~୩୫୬୬୦~~ | ~~[illegible]~~ |
| ଲୁହା | ୧୩୫ | [illegible] | [illegible] |
| କ୍ରୋମାଇଟ | ୫୨ | | |
| ମାଙ୍ଗାନିଜ | ୩୬ | | |
| ବକ୍ସାଇଟ | ୧୨୫ | ୭୩୩୦ ଲକ୍ଷ ଟନ୍ | ୭୫ |

୧୯୯୬ - ୯୭ ର ଏକ ସରକାରୀ ତଥ୍ୟ ଅନୁଯାୟୀ । ଆଜିର ଦିନରେ ଏକା ସାଙ୍ଗରେ ବହୁ ଖଣି ପ୍ରକଳ୍ପ ହେଉଥିବା ହେତୁ ଏକ ବିଂଶ ଶତାବ୍ଦୀ ଭିତରେ ସବୁ ଖଣିଜ ଦ୍ରବ୍ୟ ଶେଷ ହୋଇଯିବ ।

## ଓଡିଶାରେ ତାପଜ ବିଦ୍ୟୁତ ପ୍ରକଳ୍ପ

| | | |
|---|---|---|
| ୫. ତାପଜ ବିଦ୍ୟୁତ ହିରମା, ଝାରସୁଗଡା | ୧୨,୦୦୦ ମେଗାୱାଟ | ୫୪,୦୦୦ କୋଟି |
| ୬. ନୀଳାଚଳ ପାୱାର ଅନଗୁଳ | ୬,୦୦୦ ମେଗାୱାଟ | ୨୫,୦୦ କୋଟି |
| ୭. କଲିକତା ଇଲେକଟ୍ରିସିଟି ଢେଙ୍କାନାଳ, ଦେଉଳପୁର | ୧,୦୦୦ ମେଗାୱାଟ | ୪,୪୨୬ କୋଟି |
| ୮. ମାର୍ଥାପୁର କଟକ | ୧,୦୦୦ ମେଗାୱାଟ | ୪,୩୪୮ କୋଟି |
| ୯. ଷ୍ଟେରେଲାଇଟ ଏନାରଜି ଭୁର୍ଖାମୁଣ୍ଡା | ୨,୪୦୦ ମେଗାୱାଟ | ୬୪୮୧ କୋଟି |
| ୧୦. ଲନ୍‌କୋ ଗ୍ରୁପ ତାଲଚେର | ୧,୩୨୦ ମେଗାୱାଟ | ୪,୫୦୦ କୋଟି |
| ୧୧. ଜିନ୍ଦଲ ଫିଲିପ | ୧,୦୦୦ ମେଗାୱାଟ | ୪,୫୨୫ କୋଟି |
| ୧୨. ଭିସା ପାୱାର ଲିମିଟେଡ | ୧,୦୦୦ ମେଗାୱାଟ | ୩,୬୯୮ କୋଟି |
| ୧୩. ଭୂଷଣ ଏନାରଜି | ୨,୦୦୦ ମେଗାୱାଟ | ୮୪୮୩ କୋଟି |
| ୧୪. ଏସ.ଆର. ପାୱାର ତାଲଚେର | ୧,୦୦୦ ମେଗାୱାଟ | ୪,୫୦୦ କୋଟି |
| ୧୫. ମୋନର୍ଟ ଏନାରଜି | ୬୦୦ ମେଗାୱାଟ | ୨,୮୫୨ କୋଟି |

ବି.ଦ୍ର : ରିଲାଏନ୍ସ ଓ ମିତ୍ତଲଗ୍ରୁପ ସହ ଇସ୍ପାତ ଓ ବିଦ୍ୟୁତ ଶିଳ୍ପ ପାଇଁ ଓଡିଶା ସରକାରଙ୍କ ଆଲୋଚନା ଚାଲିଛି । ସେସବୁ ଚୁକ୍ତି ହେଲେ ପୁଁଜି ନିବେଶ ୪ ଲକ୍ଷ କୋଟିରୁ ଅଧିକ ହେବ । ତାପଜ ବିଦ୍ୟୁତ କ୍ଷେତ୍ରରେ ପ୍ରସ୍ତାବିତ ୬୨ ହଜାର କୋଟିରୁ ୪୫ ହଜାର କୋଟି ଟଙ୍କା ପାଇଁ ଚୁକ୍ତି ହୋଇ ସାରିଛି (ସେପ୍ଟେମ୍ବର ୨୬, ୨୦୦୬) । ସେଥିରୁ ୧୦୯୨୦ ମେଗାୱାଟ ବିଦ୍ୟୁତ ଉତ୍ପାଦନ ହେବ । ଆଜି ବି ଓଡିଶାର ୬୦ ଶତକଡା ଲୋକ ବିଜୁଳି ବ୍ୟବହାର କରିବା ଭଳି ଆର୍ଥିକ ସ୍ଥିତିରେ ନାହାଁନ୍ତି । ଏତେ ବିଜୁଳି କାହାପାଇଁ ? ନିଶ୍ଚିତ ଭାବେ ରିହାତି ଦରରେ ଶିଳ୍ପପତିଙ୍କୁ ଦେବା ପାଇଁ ।

# ଲୁଣ୍ଠନକାରୀ ଓ ଗଣହତ୍ୟାକାରୀ ଟାଟା ଓ ଓଡିଶା

ଟାଟା କଂପାନୀ ଓଡିଶାରୁ ପ୍ରତିବର୍ଷ ହାରାହାରି ୫୦-୬୦ ଲକ୍ଷ ଟନ ଖଣିଜ ପଦାର୍ଥ ଉତ୍ତୋଳନ କରି ନେଇଯାଉଛି । ଚୋରାରେ ଆଉ କେତେ ନେଉଛି ତାର ହିସାବ ନାହିଁ । ଏଥିରୁ କଂପାନୀର ବାର୍ଷିକ ଅତିକମରେ ୧୫୦୦ କୋଟି ଟଙ୍କା ମୁନାଫା ଅର୍ଜନ କରୁଥିବା ବେଳେ ଓଡିଶା ସରକାର ପାଉଛନ୍ତି ବାର୍ଷିକ ପ୍ରାୟ ୨୦ କୋଟି ଟଙ୍କା । ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିରେ ମୟୂରଭଞ୍ଜ ର ତତ୍କାଳୀନ ମହାରାଜ ରାମଚନ୍ଦ୍ର ଭଞ୍ଜଦେଉ ଅତ୍ୟନ୍ତ ଉଦାର ସର୍ତ୍ତରେ ଟିସ୍କୋକୁ ଗୋରୁ ମହିଷାଣି, ବାଦାମପାହଡ କୁ ଲିଜ୍ ଦେଇଥିଲେ । ସେଠି ସାଢେ ତିନି କୋଟି ମେଟ୍ରିକ୍ ଟନ୍ ର ଲୁହା ପଥର ଥିଲା । ୧୯୨୫ରେ କେନ୍ଦୁଝର ରାଜା ଜୋଡା ଅଞ୍ଚଳରେ ଅନ୍ୟଏକ ଲୁହା ଖଣି ଓ ସ୍ୱାଧୀନତା ପ୍ରାକ୍ କାଳରେ କଂପାନୀ, ସୁକିନ୍ଦା ଅଂଚଳରେ ଏକ ବିଶାଳ କ୍ରୋମ୍ ଖଣି ଲିଜ୍ ନେଇଥିଲା । ୧୯୫୩ ମସିହାରେ ଏସବୁ ଖଣି ଲିଜ୍ ର ନବୀକରଣ କରିଥିଲା ସେ ସମୟର କଂଗ୍ରେସ ସରକାର । ସରକାରୀ ତଥ୍ୟ ଅନୁଯାୟୀ ଟାଟା ଓଡିଶା ଖଣିରୁ ୨୦୦୩-୦୪ ବର୍ଷ ରେ ୧୨ଲକ୍ଷ ୧୫ ହଜାର ୬୧୫ ଟନ୍ କ୍ରୋମାଇଟ୍ ଉତ୍ତୋଳନ କରିଥିବା ବେଳେ ସେଥିରୁ କଂପାନୀର ଓଡିଶା ସ୍ଥିତ କାରଖାନାରେ ମାତ୍ର ୬୯ ହଜାର ବ୍ୟବହାର କରାଯାଇଛି । ସେହିପରି ଓଡିଶାରେ ଥିବା କଂପାନୀ ଖଣିରୁ ୪୪ ଲକ୍ଷ ଟନ୍ ଲୁହା ପଥର, ୩ଲକ୍ଷ ୨୪ହଜାର ଟନ୍ ମାଙ୍ଗାନିଜ୍ , ୨ଲକ୍ଷ ୯୨ହଜାର ଟନ୍ ଡୋଲାମାଇଟ ଏବଂ ୨ଲକ୍ଷ ୩ହଜାର ଟନ୍ ପାରେକ୍ସନାଇଟ୍ ଉତ୍ତୋଳନ କରିଥିବା ବେଳେ ଓଡିଶା ଏହାର ବ୍ୟବହାର ହେଇ ନାହିଁ । ଏ ସବୁ ବଦଳରେ ଓଡିଶାବାସୀଙ୍କୁ ଟାଟା ର ଉପହାର ହେଲା କଳିଙ୍ଗନଗର ଓ ଗୋପାଳପୁରର ଗଣହତ୍ୟା ।

ଯାଜପୁର ଅଞ୍ଚଳର କଳିଙ୍ଗନଗର ଅଞ୍ଚଳରେ ଟାଟା କଂପାନୀ ପାଇଁ ଗଲା ଜାନୁଆରୀ ୨,୨୦୦୬ରେ ଗୁଳିକାଣ୍ଡ ହେଲା ଓ ୧୩ ଜଣ ଆଦିବାସୀ ଶହୀଦ ହୋଇଗଲେ । ଟାଟାର ପୂର୍ଣ୍ଣାଙ୍ଗ ପ୍ରକଳ୍ପ ଆସିବା ଆଗରୁ ପ୍ରଶାସନ ଓ ମନ୍ତ୍ରୀଙ୍କ ପ୍ରରୋଚନାରେ ଟାଟା କଂପାନୀବାଲା ଜମି ଅଧିଗ୍ରହଣ କରିବା ପାଇଁ ଉଦ୍ୟମ କଲେ । ଯେଉଁଥିପାଇଁକି ଏପରି ଦୁଃଖଦ ଘଟଣା ଘଟିଲା । ମାତ୍ର କଳିଙ୍ଗନଗରରେ ଟାଟା ବ୍ୟତୀତ ଆହୁରି ୧୧ଟି କଂପାନୀ ଆସିବେ ଓ କେତେଜ ଆସିଛନ୍ତି । ଏହାଦ୍ୱାରା ସମୁଦାୟ ବିସ୍ଥାପିତଙ୍କ ସଂଖ୍ୟା ସରକାରଙ୍କ ପାଖରେ ନାହିଁ । ନୀଳାଚଳ ଇସ୍ପାତ ୬୩୯ ଜଣଙ୍କୁ ବିସ୍ଥାପିତ କରି ମାତ୍ର ୧୮୨ ଲୋକଙ୍କୁ ଚାକିରୀ ଦେଇଛି । ଟାଟାର ପ୍ରକଳ୍ପ ସମ୍ପର୍କରେ ତଥ୍ୟ ନାହିଁ । ଗଲା ଦଶବର୍ଷ ମଧ୍ୟରେ ଟାଟାର ଟିସ୍କୋ କଂପାନୀ ପ୍ରାୟ ୩୦,୦୦୦ ହଜାର ଲୋକଙ୍କୁ ଛଟେଇ କରିସାରିଲାଣି । ୨୦୦୧ ବଳକୁ ସମୁଦାୟ ଶ୍ରମିକ ସଂଖ୍ୟା ୭୯,୦୦୦ ରୁ ଖସି ୪୮,୦୦୦ରେ ପହଁଞ୍ଚିଛି । ("You are fired",India Today, July 9,2001)

## ଟାଟାକୁ ଦିଆଯାଇ ଖଣି ଲିଜ୍

| ସମୟ | ସ୍ଥାନ | ଖଣି ଅଂଚଳ ଏକରରେ |
|---|---|---|
| ୧୯୭୦ | କେନ୍ଦୁଝର | ୨୦୩୦ - ଲୁହା ଓ ମାଙ୍ଗାନିଜ |
| ୧୯୮୪ | କେନ୍ଦୁଝର | ୬୯୬୨- ଲୁହା ଓ ମାଙ୍ଗାନିଜ |
| ୧୯୮୫ | କେନ୍ଦୁଝର | ୪୧୭ - ମାଙ୍ଗାନିଜ |
| ୧୯୮୫ | କେନ୍ଦୁଝର | ୧୧୪୬- ଲୁହା ଓ ମାଙ୍ଗାନିଜ |
| ୧୯୯୩ | ସୁନ୍ଦରଗଡ | ୯୧୮ - ଡୋଲାମାଇଟ |
| ୧୯୯୭ | କେନ୍ଦୁଝର | ୧୬୫୭ - ଲୁହା |
| ୧୯୯୮ | କେନ୍ଦୁଝର | ୪୦- ମାଙ୍ଗାନିଜ |
| ୧୯୯୮ | ସୁକିନ୍ଦା | ୧୦୦୨- କ୍ରୋମ |

# ଆଦିବାସୀ ଓ ଜଗତୀକରଣ

■ ସରୋଜ

ଏ ଦସ୍ତଖତ କା'ର
ଯାହା ମାଟି ନ ଥିବା ପବନର
ଆକାଶରେ ଝୁଲେଇ ଦେଲା ମତେ ।

ଏ କେମିତି ପବନ
ଯାର ନିଶ୍ୱାସରେ ବାରି ହୁଏ ନାହିଁ ଅରଣ୍ୟର ଗନ୍ଧ
ଦେଖି ହୁଏ ନାହିଁ
ଚଢ଼େଇର ପରରେ ପତରର ରଂଗ ।

ମୋର ଦେହକୁ
ଟାଙ୍ଗିଦେଇ ମେଘର ଖୁଣ୍ଟିରେ
କହୁଛି ତାରା ନେ,ନେ ଜହ୍ନ
ମଙ୍ଗଳ ଗ୍ରହରେ ବସତି ପାଇଁ
ଆଉ କେତେ ଦିନ
ଯାହା କୁଆଡ଼େ ମାଜିଦେବ ମୋର
କପାଳରେ ରଚା ଯୁଗ ଯୁଗର ଅନ୍ଧାର ।

କହୁଛି ଏତେ ଯୁଗ ହେଲା
କାଇଁ ଆୟୁଷ ବାନ୍ଧିଛୁ
ନଈର ନାଡ଼ିରେ
ଝରଣାର ଧମନୀରେ
ନିଜ କ୍ଷତର ନିଦାନ ଖୋଜୁଛୁ
ଗଛର ଚେରରେ
ଭାଗ୍ୟକୁ ଯୋଡୁଛୁ
ଡ଼ଙ୍ଗର ଖୋଲର ବନସ୍ପତିରେ ।

ଡ଼େଇଁ ଯା ମକାବାଡ଼ି
ଅଲସୀ କ୍ଷେତର ଲହଡ଼ି
ଧରଣୀ ଖୁଣ୍ଟାରୁ ଖୋଲି ଦେଇ
ନିଜ ଆତ୍ମାର ଦଉଡ଼ି
ଭୁଲିଯା ଗଲା ଚଇତିରେ
ଗୀତ ଗୀତରେ ସଙ୍ଗାତକୁ
ଦେଇଥିବା କଥା
ବାଲିଯାତରେ ଯିଏ ନାଚିଥିଲା
ତୋ ଅଣ୍ଟାରେ ହାତ ଦେଇ ରାତିସାରା ।

ସେ ଦସ୍ତଖତରେ କୁଆଡ଼େ
ପୃଥିବୀଟା ହେଇଯାଉଛି ଉଦାର
ଯିଏ ଯାହା ଚାହୁଁଛି କରିପାର ।

ମତେ ନ ପଚାରି
କିଏ ମୋର ମୃତ୍ୟୁନାମାରେ ସନ୍ତକ ଦେଲ
ଲୋଡ଼ା ନାହିଁ ମତେ ଜହ୍ନ କି ଜଗତ
ମୁଁ ତ ମାଟିର ପୋକ
ମାଟି ଖାଇ ମାଟିରେ କରିଛି ଘର
ଯାଅ ଯାଅ
ମା' କୁ ନେଇ କରିବାକୁ ଦେବିନି ବେପାର ।

୦୦୦

